# ବୈଶେଷିକ ସୂତ୍ର




ଓଡ଼ିଶା ପବ୍ଲିଶିଂହାଉସ୍

# ଜୈମିନୀୟ ସୂତ୍ର

ଅନୁବାଦକ

ପଣ୍ଡିତ ଶ୍ରୀ ପଦ୍ମଚରଣ ତ୍ରିପାଠୀ

ବ୍ରହ୍ମପୁର ଗ୍ରାମାଧୀନ ସଂସ୍କୃତ ବିଦ୍ୟାଳୟର ଜ୍ୟୋତିଷ ଅଧ୍ୟାପକ

ଓ

ତରୁଣ ଜ୍ୟୋତିଷୀ ଶ୍ରୀ ସତ୍ୟନାରାୟଣ ମିଶ୍ର

ପ୍ରଥମ ମୁଦ୍ରଣ

ପ୍ରକାଶକ

ଶ୍ରୀ ସତ୍ୟନାରାୟଣ ମିଶ୍ର

ଓଡ଼ିଶା ପ୍ରିଣ୍ଟିଂ ୱାର୍କସ୍

ବ୍ରହ୍ମପୁର. କଟକ: ସମ୍ବଲପୁର

୧୯୫୧

ମୂଲ୍ୟ ଟ ୧ ୴

ଓଁ

ବଲାଙ୍ଗିର

ତତ୍ସତ୍

୭।୭।୫୦

ବାବୁ ! ପଦ୍ମଚରଣ ଆଶୀର୍ବାଦ

ତୁମ୍ଭଦ୍ୱାରା ଅନୁବାଦ ହୋଇଥିବା ଜୈମିନୀୟ ସୂତ୍ରର କେତେକାଂଶ ଦେଖିଲି, ଆୟୁଃସାଧନ ଆଦି ଅନ୍ୟାନ୍ୟ ପୁସ୍ତକରୁ ଆଣି ସଂଗ୍ରହ କରିଥିବାରୁ ସ୍ଥାନରେ ସୁଗନ୍ଧିନ୍ୟାୟ ହୋଇଛି। ଆମ୍ଭ ଉତ୍କଳ ଜନନୀଙ୍କ ଭଣ୍ଡାରରେ ଏହି ଜ୍ୟୋତିଷ ମୂଳ ଗ୍ରନ୍ଥଟି ଦୁର୍ଲ୍ଲଭଥିଲା, କିନ୍ତୁ ଆଜି ତୁମ୍ଭ ଦ୍ୱାରା ପୂରଣ ହେବାରୁ ମୁଁ ତାଙ୍କୁ ଭାଗ୍ୟବାନ ମନେ କରୁଛି। ମୁଁ କାଶୀରେ ଯେତେବେଳେ ଏହି ଗ୍ରନ୍ଥ ପଢେଁ, ସେତେବେଳେ ଜ୍ୟୋ: ପ୍ରଧାନାଧ୍ୟାପକ ପୂଜ୍ୟପାଦ ରାମଯତ୍ନ-ଓଝା ମହାଭାଗ ବାର ୨ କହନ୍ତି, "ଦେଖ ଜ୍ୟୋତିଷରେ କେବଳ ମୂଳତନ୍ତ୍ର ଜୈମିନୀୟ ସୂତ୍ର ମାତ୍ର—ଏହାର ଫଳ ଠିକ୍ ଘଟେ, ତୁମ୍ଭ ଉତ୍କଳରେ ଏହାର ପ୍ରଚାର ନାହିଁ। ତୁ ସେଠାରେ ପ୍ରଚାର କରିବୁ" ଏଥିର ଆୟୁର୍ନିର୍ଣ୍ଣୟ ଓ ଭାଗ୍ୟ ବିଚାର ଆଦି ମିଳ୍‌ଭୁଲ ଠିକ୍ ଲାଗେ। ସୁତରାଂ ମୁଁ ବିଶେଷ ଗବେଷଣା କରିଥିବାର ଫଳ ଅଜ-ତୁମ୍ଭଠାରେ ପ୍ରତିଫଳିତ ହେଲା। ପରାଶର, ବରାହମିହିର, ରାମଦୈବଜ୍ଞ ପ୍ରଭୃତିଙ୍କର ମତକୁ ଉକ୍ତ ଗ୍ରନ୍ଥରେ ସାମଞ୍ଜସ୍ୟ କରି ତୁମେ ଯେଉଁ କାର୍ଯ୍ୟ କରିଛ, ଏହାଦ୍ୱାରା ଫଳିତ ଜ୍ୟୋତିଷର ବିଶେଷ ଗୌରବ ବଢିଛି। ଜ୍ୟୋତିଷ ପ୍ରତି ଏହା ତୁମ୍ଭର ବିଶେଷ ଦାନ

ଅଟେ । ଆଶା ଭବିଷ୍ୟତରେ ପୁଣି ଅନ୍ୟାନ୍ୟ ଗ୍ରନ୍ଥ ଅନୁବାଦ କରି ବିଶେଷ କୃତିତ୍ୱ ଲାଭକର, ଏହାହିଁ ମୋର ଆଶୀର୍ବାଦମାନ ।

ତୁମ୍ଭର ଶୁଭାକାଙ୍କ୍ଷୀ

ରାଜ ଜ୍ୟୋତିଷ ପଃ ଶ୍ରୀ ଭଗବତ୍ ପ୍ରସାଦ ଶତପଥୀ

ଜ୍ୟୋ: ଶାସ୍ତ୍ରାଚାର୍ଯ୍ୟ (ବେନାରସ)

ଜ୍ୟୋ: ଅଧ୍ୟାପକ ବିଦ୍ୟାଭୂଷଣ-ସଂସ୍କୃତ କଲେଜ

ବଲାଙ୍ଗିର

— ॥✲✲॥ —

# ସୂଚନା

ବିଫଳାନ୍ୟାନ୍ୟ ଶାସ୍ତ୍ରାଣି ବିବାଦସ୍ତେଷୁ କେବଳଂ

ସଫଳଂ ଜ୍ୟୋତିଷଂଶାସ୍ତ୍ରଂ ଚନ୍ଦ୍ରାର୍କୌ ଯତ୍ର ସାକ୍ଷିଣୌ !

ଜଗତରେ ମାନବ ସମାଜ ଯେତେବେଳେ ପ୍ରଥମେ ନିଜକୁ ସଭ୍ୟ ଓ ସୁଶିକ୍ଷିତ ବୋଲି ଭାବି ଶିଖିଥିଲେ ସେହିଦିନୁଁ ମହର୍ଷିମାନେ ଜ୍ୟୋତିଷ ଶାସ୍ତ୍ର ସେମାନଙ୍କ ଭବିଷ୍ୟତ ଜୀବନକୁ ସମ୍ପୂର୍ଣ୍ଣ ଭାବେ ପ୍ରଭାବିତ ତଥା ନିୟନ୍ତ୍ରିତ କରି, ବହୁ ବିପଦରୁ ରକ୍ଷା କରିବାର ଘଟଣା ପୁରାଣ, ଇତିହାସ, କିମ୍ବଦନ୍ତୀ ଓ ବିବିଧ ସାହିତ୍ୟ ପ୍ରମାଣ ଦେଉଛନ୍ତି । ଜ୍ୟୋତିଷଶାସ୍ତ୍ର ପ୍ରତ୍ୟକ୍ଷ ଫଳପ୍ରଦ ହୋଇଥିଲେହେଁ, ଏହି ଶାସ୍ତ୍ରକୁ ଉପଯୁକ୍ତ ଭାବେ ଅଧ୍ୟୟନ ନକରି ଫଳାଫଳ କହିବାରେ ଏହାର ଯଶଃ, ଗୌରବ କ୍ଷୁର୍ଣ୍ଣ ହେଉଅଛି । କିନ୍ତୁ ତାହା ବୋଲି ଜ୍ୟୋତିଷ ଶାସ୍ତ୍ର ଉପରେ ସମ୍ପୂର୍ଣ୍ଣ ଅନାସ୍ଥା ପ୍ରଦର୍ଶନ କରିବା ମୂର୍ଖତଃ ଅବିବେକତା ତଥା ଅଜ୍ଞାନ ତାର ପରିଚୟକ ।

ଜଗତର ଶ୍ରେଷ୍ଠ ନାସ୍ତିକ ତଥା ଜ୍ୟୋତିଷ—ଅବିଶ୍ୱାସୀ ମଧ୍ୟ ପୃଥିବୀ ତଥା ଜୀବସମାଜ ଉପରେ ଚନ୍ଦ୍ରଗ୍ରହଙ୍କର ପ୍ରଭାବ ସ୍ୱୀକାର କରିବେ । ବିଶେଷତଃ ଚନ୍ଦ୍ରଙ୍କର ମସ୍ତିଷ୍କ ଉପରେ ପ୍ରଭାବ ଅତ୍ୟଧିକ ବୋଲି ବର୍ତ୍ତମାନ ସବୁ ଶ୍ରେଣୀର ବୈଜ୍ଞାନିକ ମାନଙ୍କ ଦ୍ୱାରା ସ୍ୱୀକୃତ । ଚନ୍ଦ୍ରଙ୍କ ପ୍ରଭାବଦ୍ୱାରା ସମୁଦ୍ରରେ ଜୁଆର ଓ ଭଟ୍ଟା ହେବାର ଖବର ପ୍ରତ୍ୟେକେ ଜାଣନ୍ତି । ସବୁଠାରୁ ଗଭୀରତମ

ସାଗରରେ ଏହାର ଆକର୍ଷଣ ଏତେ ଅଧିକ ଯେ ହଜାର ହଜାର ଟନ୍ ଓଜନର ପାଣି ୭୦ ଫୁଟ ଉପରକୁ ବର୍ତ୍ତୁଳ ପ୍ରଣାଳୀରେ ଉଠିଥାଏ ।

ଡାରଉଇନ୍, ପ୍ଲେଂମରଅନ୍ ଓ ଅନ୍ୟାନ୍ୟ ବୈଜ୍ଞାନିକମାନେ ଚନ୍ଦ୍ରର ଆକର୍ଷଣ ଦ୍ୱାରା ପୃଥିବୀର ଘନ ପଦାର୍ଥ ଉପରେ ମଧ୍ୟ ଜୁଆର ହୁଏ ବୋଲି ବ୍ୟକ୍ତ କରନ୍ତି । ଯଦି ଏକଥା ସତ୍ୟ ବୋଲି ସ୍ୱୀକାର କରାଯାଏ ତାହାହେଲେ ଚନ୍ଦ୍ରଠାରୁ ଆକାରରେ ବୃହତ୍ତମ ଅନ୍ୟାନ୍ୟ ଗ୍ରହମାନଙ୍କ ପ୍ରଭାବ ମଧ୍ୟ ପୃଥିବୀ ଉପରେ ଅବଶ୍ୟ ଅଛି । ନିମ୍ନରେ ଚନ୍ଦ୍ରାଦି ଗ୍ରହଗଣଙ୍କ ପରିଧି ଦିଆଗଲା—

| | | | |
|---|---|---|---|
| ଚନ୍ଦ୍ର | ପରିଧି | —୨୧୦୦ | ମାଇଲ |
| ବୁଧର | ” | —୨୦୦୦ | ” |
| ଶୁକ୍ରର | ” | —୭୫୧୦ | ” |
| ପୃଥିବୀ | ” | —୭୯୧୩ | ” |
| ମଙ୍ଗଳ | ” | —୪୯୨୦ | ” |
| ଗୁରୁ | ” | —୮୮୩୯୦ | ” |
| ଶନି | ” | —୭୧୯୦୦ | ” |
| ରବି | ” | —୮୬୦୦୦୦ | ” |

( ଉରାନସ୍—୩୩୦୦୦, ନେପଚୁନ୍—୩୬୦୦୦ )

ଏପରି ସ୍ଥଳେ ଚନ୍ଦ୍ର ଭିନ୍ନ ଗ୍ରହଙ୍କର ପୃଥିବୀ ଉପରେ ପ୍ରଭାବ-ନାହିଁ ବୋଲି କିପରି କୁହାଯାଇପାରେ ?

ଏହି ସବୁ ସତ୍ୟ ପୁରାତନ ଭାରତର ଜ୍ୟୋତିଷୀମାନେ ଅସାଧାରଣ ମେଧା ଦ୍ୱାରା ଜାଣି ପାରିଥିଲେ ଓ ସେମାନଙ୍କ ପ୍ରବର୍ତ୍ତିତ ଫଳିତ ଜ୍ୟୋତିଷ ଏହାରି ଉପରେ ଅବସ୍ଥିତ । ତେଣୁ ଫଳିତ ଜ୍ୟୋତିଷର ସତ୍ୟତାରେ ସନ୍ଦେହାନ ହେବା ସର୍ବାଦୌ ଅନୁଚିତ ।

ଯେଉଁ କେତେକ ଜ୍ୟୋତିଷ ମନୀଷୀ ପ୍ରଗାଢ ଅଧ୍ୟୟନ ସାପେକ୍ଷ ଜ୍ୟୋତିଷ ଶାସ୍ତ୍ରର ଉଦ୍ଭାବନ ପୂର୍ବକ ପୁଙ୍ଖାନୁପୁଙ୍ଖ ରୂପେ ଆଲୋଚନା କରି ଭବିଷ୍ୟତ ମାନବ ସମାଜର ଐହିକ ତଥା ପାର-ଲୌକିକ କଲ୍ୟାଣ ନିମନ୍ତେ ଲିପିବଦ୍ଧ କରି ଯାଇଛନ୍ତି ସେମାନଙ୍କ ମଧ୍ୟରେ ମହର୍ଷି ଜୈମିନୀ ଅନ୍ୟତମ ହେଲେ ମଧ୍ୟ ଅବଶ୍ୟ ଶ୍ରେଷ୍ଠସ୍ଥାନ ଅଧିକାର କରିବେ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ, ପରାଶର, ଅଙ୍ଗିରା ପ୍ରଭୃତି ଫଳିତ ଜ୍ୟୋତିଷର ପ୍ରବର୍ତ୍ତକ ମାନଙ୍କ ବିଚାର ପ୍ରଣାଳୀ ଅପେକ୍ଷା ଜୈମିନୀଙ୍କ ପ୍ରଣାଳୀ ଭିନ୍ନ ଓ ଦୃଷ୍ଟି ବିଚାରରେ ଜୈମିନୀ ମତର ସତ୍ୟତା ବହୁ କ୍ଷେତ୍ରରେ ଉପଲବ୍ଧି କରାଯାଇଛି ।

ଭାରତର ପ୍ରାୟ ସବୁଭାଷାରେ ଜୈମିନୀଋଷି ପ୍ରବର୍ତ୍ତିତ ସୂତ୍ରାବଳୀର ଭାଷାଟୀକା ପ୍ରକାଶିତ ହୋଇଅଛି, କିନ୍ତୁ ଉତ୍କଳରେ

ଅନ୍ୟାନ୍ୟ ବହୁ ଜ୍ୟୋତିଷ ଗ୍ରନ୍ଥ ଥିଲେହେଁ ଏମନ୍ତ ଗୋଟିଏ ମୂଲ୍ୟବାନ୍ ଗ୍ରନ୍ଥ ଅପ୍ରକାଶିତ ଭାବେ ରହିବା ଅନୁପଯୁକ୍ତ ଭାବି ଓ ଅଧୁନାତନ ଉତ୍କଳୀୟ ଜ୍ୟୋତିର୍ବିଦ୍ ମାନଙ୍କ ସୁବିଧା ନିମନ୍ତେ ଏହି ସୂତ୍ରାବଳୀ ଉତ୍କଳ ଭାଷାନୁବାଦସହ ପ୍ରକାଶିତ କରାଗଲା । ଜ୍ୟୋତିଷ ଛାତ୍ର ତଥା ଅନ୍ୟାନ୍ୟ ଜ୍ୟୋତିଷଙ୍କ ମାନେ ଏହି ଚେଷ୍ଟାଦ୍ୱାରା କିଞ୍ଚିତ ଉପକୃତ ହେଲେ ମୋର ଶ୍ରମ ସାର୍ଥକ ହେବ ।

ଲେଖକ



# ଜୈମିନୀୟ ସୂତ୍ର

## ଶ୍ରୀ ଗଣେଶାୟ ନମଃ

### ଓଁ ଶ୍ରୀ ସୂର୍ଯ୍ୟାୟ ନମଃ

—:o:—

ସିନ୍ଦୂର ଭୂଧରନିଭେ ନୃକୁଦନ୍ତ ଶୋଭୀ
ସନ୍ଧ୍ୟା ସଚନ୍ଦ୍ର ସହ୍ଵଜାଗଣ ରଙ୍ଜନଭୋଭଃ ।
ବିଘ୍ନାଦ୍ରି କୋଟି ଶତକୋଟିରମୋଘଶକ୍ତିଃ
ଶ୍ରେୟଃ ସମାଦଶତୁ ଶାଶ୍ଵତକଂ ଗଣେଶଃ । ୧ ।
ଯଃକର୍ତ୍ତା ଜଗତାଂ ଭର୍ତ୍ତା ସଂହର୍ତ୍ତା ମହସାନ୍ନିଧିଃ ।
ପ୍ରଣମାମି ତମାଦ୍ଦତ୍ୟଂ ବହ୍ନିରନ୍ତ ସ୍ତମୋପହମ୍ । ୨ ।

## ଅଥ ପ୍ରଥମାଧ୍ୟାୟସ୍ୟ ପ୍ରଥମ ପାଦଃ:-

ସୂତ୍ର:-

ଉପଦେଶଂ ବ୍ୟାଖ୍ୟାସ୍ୟାମଃ । ୧ ।

ଅର୍ଥ:— ଉପଦେ-(ହେ ଜଗଦମ୍ବେ) ଶଂ (ମଙ୍ଗଳଂ) ଅର୍ଥାତ୍ ଲୋକମାନଙ୍କର ଯାହାଦ୍ୱାରା ଉପକାର ହେବ, ସେହି ଫଳିତ ଜ୍ୟୋତିଷ ଶାସ୍ତ୍ରକୁ ମୁଁ ପ୍ରକାଶ କରୁଅଛି ।

### ରାଶି ପରିଚୟ

ମେଷ ବୃଷ ମିଥୁନ କର୍କଟ ସିଂହାଃ କନ୍ୟା ତୁଲାଥ ବୃଶ୍ଚିକଶ୍ଚ ।
ଧନୁରଥ ମକରଃ କୁମ୍ଭୋ ମୀନ ଇତି ଚ ରାଶୟଃ କଥିତାଃ ।

ଅର୍ଥ:—ଅଶ୍ୱିନୀ ପ୍ରଭୃତି ୨୭ ଗୋଟି ନକ୍ଷତ୍ରକୁ ନେଇ-ମେଷ, ବୃଷ, ମିଥୁନ, କର୍କଟ, ସିଂହ, କନ୍ୟା, ତୁଳା, ବୃଶ୍ଚିକ, ଧନୁ, ମକର, କୁମ୍ଭ ଓ ମୀନ ଏହି ୧୨ ଗୋଟି ରାଶି ଗଠିତ ।

### କ୍ରୂରସୌମ୍ୟାଦି ରାଶି-ବିଚାର

କ୍ରୂରୋଽଥ ସୌମ୍ୟଃ ପୁରୁଷୋଽଙ୍ଗନାଚ
ଓଜୋଽଥ ଯୁଗ୍ମଂ ବିଷମଂ ସମଶ୍ଚ ।
ଚରସ୍ଥିର ଦ୍ୱାତ୍ମିକ ନାମଧେୟା
ମେଷାଦୟୋଽମୀ କ୍ରମଶଃ ପ୍ରଦିଷ୍ଟାଃ ।

ଅର୍ଥ:—ମେଷାଦି ଦ୍ୱାଦଶରାଶି ଯଥା କ୍ରମେ କ୍ରୂର ଓ ସୌମ୍ୟ, ପୁରୁଷ ଓ ସ୍ତ୍ରୀ, ଓଜ ଓ ଯୁଗ୍ମ, ବିଷମ, ସମ ଏବଂ ଚର, ସ୍ଥିର ଓ ଦ୍ୱିସ୍ୱଭାବ ନାମରେ ଅଭିହିତ ଅଟନ୍ତି ।

ଯଥା:—କ୍ରୂରରାଶି—ମେଷ, ମିଥୁନ, ସିଂହ, ତୁଳା, ଧନୁ, କୁମ୍ଭ, ସୌମ୍ୟ—ବୃଷ, କର୍କଟ, କନ୍ୟା, ବୃଶ୍ଚିକ, ମକର, ମୀନ, ପୁରୁଷ—ମେଷ, ମିଥୁନ, ସିଂହ, ତୁଳା, ଧନୁ, କୁମ୍ଭ; ସ୍ତ୍ରୀ ରାଶି—ବୃଷ, କର୍କଟ, କନ୍ୟା, ବୃଶ୍ଚିକ, ମକର, ମୀନ; ଓଜରାଶି—ମେଷ, ମିଥୁନ, ସିଂହ, ତୁଳ, ଧନୁ, କୁମ୍ଭ; ଯୁଗ୍ମ—ବୃଷ, କର୍କଟ, କନ୍ୟା, ବୃଶ୍ଚିକ, ମକର, ମୀନ, ବିଷମ—ମେଷ, ମିଥୁନ, ସିଂହ, ତୁଳା, ଧନୁ, କୁମ୍ଭ । ସମ-ବୃଷ, କର୍କଟ, କନ୍ୟା, ବୃଶ୍ଚିକ, ମକର, ମୀନ; ଚର—ମେଷ, କର୍କଟ, ତୁଳା, ମକର, ସ୍ଥିର—ବୃଷ, ସିଂହ, ବୃଶ୍ଚିକ, କୁମ୍ଭ; ଦ୍ୱିସ୍ୱଭାବ—ମିଥୁନ, କନ୍ୟା, ଧନୁ, ମୀନ ।

° ରାଶିମାନଙ୍କ ଦୃଷ୍ଟି ବିଚାର

## ସୂତ୍ର:-ଅଭିପଶ୍ୟନ୍ତ୍ୟୃକ୍ଷାଣି ପାର୍ଶ୍ୱଭେଚ । ୨ ।

ଅର୍ଥ:—ମେଷାଦି ରାଶିଗୁଡ଼ିକ ନିଜର ପାର୍ଶ୍ୱକୁ ଦେଖନ୍ତି ।

ଅର୍ଥାତ୍ ଚରରାଶି ନିଜର ଦ୍ୱିତୀୟସ୍ଥ ସ୍ଥିର ରାଶିକୁ ଛାଡ଼ି, ଅନ୍ୟ ସମସ୍ତ ସ୍ଥିରରାଶିକୁ ଦେଖେ । ସ୍ଥିରରାଶି ନିଜ ଦ୍ୱାଦଶ ଚରରାଶିକୁ ତ୍ୟାଗ କରି ବାକି ସମସ୍ତ ଚରରାଶିକୁ ଦେଖେ । ଦ୍ୱାତ୍ମିକ ରାଶି ନିଜକୁ ଛାଡ଼ି ବାକି ସମସ୍ତ ଦ୍ୱାତ୍ମିକ ରାଶିଙ୍କୁ ଦେଖେ । ସେହିପରି ଅଗ୍ନ୍ୟର୍ଯୋକ୍ତ ଯଥା :---

"ଚରଂ ଧନବିନା ସ୍ଥାଣୂନ୍ ସ୍ଥିରମନ୍ତ୍ୟ ବିନା ଚରମ୍ ।
ଯୁଗ୍ମଂ ସ୍ୱେନ ବିନା ଯୁଗ୍ମଂ ପଶ୍ୟତୀତ୍ୟଯୁମା ଗମଃ ॥"

ଦ୍ରଷ୍ଟବ୍ୟ:—ଅନ୍ୟାନ୍ୟ ଜ୍ୟୋତିଷ ଗ୍ରନ୍ଥମାନଙ୍କ ଅପେକ୍ଷା ଏହି

ଶାସ୍ତ୍ରରେ ରାଶିମାନଙ୍କ ଉକ୍ତ ଦୃଷ୍ଟିର ପ୍ରାଧାନ୍ୟ ବିଶେଷ ଭାବେ ଗ୍ରହଣ କରାଯାଇଛି ।

## ଗ୍ରହପରିଚୟ

ସୂର୍ଯ୍ୟ ସୋମୋମହୀସୂନୁଃ ସୋମପୁତ୍ରୋବୃହସ୍ପତିଃ-
ଶୁକ୍ରଃ ଶନୈଶ୍ଚରୋରାହୁଃ କେତବଶ୍ଚ ଗ୍ରହାଃସ୍ମୃତାଃ

ଅର୍ଥ:—ରବି, ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର, ଶନିଶ୍ଚର, ରାହୁ ଓ କେତୁ ଏହି ୯ ଟି ଗ୍ରହଙ୍କୁନେଇ ଉକ୍ତ ଶାସ୍ତ୍ରରେ ସମସ୍ତ ଫଳ ବିଚାର କରାଯାଇଛି ।

## ଗ୍ରହମାନଙ୍କ-କ୍ଷେତ୍ର ନିର୍ଣ୍ଣୟ

କୁଜ ଶୁକ୍ର ବୁଧେନ୍ଦ୍ୱର୍କ ସୌମ୍ୟ ଶୁକ୍ରାବନୀ ଭୁବାମ୍ ।
ଜୀବାର୍କି ଭାନୁଜେଜ୍ୟାନାଂ କ୍ଷେତ୍ରାଣି ସ୍ୟୁରଜାଦୟଃ ।

ଅର୍ଥ:—ମେଷ ମଙ୍ଗଳଙ୍କର, ବୃଷ ଶୁକ୍ରଙ୍କର, ମିଥୁନ ବୁଧଙ୍କର, କର୍କଟ ଚନ୍ଦ୍ରଙ୍କର, ସିଂହ ରବିଙ୍କର, କନ୍ୟା ବୁଧଙ୍କର, ତୁଳା ଶୁକ୍ରଙ୍କର, ବିଛା ମଙ୍ଗଳଙ୍କର, ଧନୁ ବୃହସ୍ପତିଙ୍କର, ମକର ଓ କୁମ୍ଭ ଶନିଙ୍କର, ମୀନ ବୃହସ୍ପତିଙ୍କର ଗୃହ ଅଟେ ।

"କନ୍ୟା ରାହୁ ଗୃହଂ ପ୍ରୋକ୍ତଂ" ଏହି ଅନୁସାରେ ରାହୁର ଗୃହ କନ୍ୟା ଓ କେତୁର ଗୃହ ମୀନ ଅଟେ । କିନ୍ତୁ ଏଥିରେ ବୃଶ୍ଚିକରାଶିର ଅଧିପତି କେତୁ ଓ କୁମ୍ଭର ଅଧିପତି ରାହୁ ବୋଲି ଧରାଯାଇଛି ।

## ଗ୍ରହମାନଙ୍କର ଶୁଭାଶୁଭ ବିଚାର

"ଅର୍କାର ମନ୍ଦଫଣିନଃ କ୍ରମାତ୍ କ୍ରୂରା ଯଥାଽଧିକମ୍ ।
ଚନ୍ଦ୍ରୋଽପି କ୍ରୂର ଏବାତ୍ର କ୍ଷୟଦଙ୍ଗାରକାଶ୍ରୟେ ।

ଗୁରୁଧ୍ୱଜ-କବିକ୍ଷାଃସ୍ୟୁ ଯଥା ପୂର୍ବଂ ଶୁଭଗ୍ରହାଃ ।”

ଅର୍ଥ:—ଉକ୍ତ ଗ୍ରନ୍ଥରେ ରବି, ମଙ୍ଗଳ, ଶନି ଓ ରାହୁ କ୍ରମରେ ପାପ ଗ୍ରହ ବୋଲି ଧରାଯାଇଛନ୍ତି । ଏମାନେ ଯଦି ପାପ ଗ୍ରହରାଶିରେ ରହନ୍ତି ତେବେ ବିଶେଷ ପାପ ହୋଇପଡନ୍ତି, ଓ ଶୁଭ ଗ୍ରହ ରାଶିରେ ହେଲେ ଅଳ୍ପ ପାପ ହୋଇଥାନ୍ତି । ମେଷ ଓ ବୃଶ୍ଚିକ ରାଶିସ୍ଥ ଚନ୍ଦ୍ରଙ୍କୁ ମଧ୍ୟ ପାପ ଗ୍ରହ ବୋଲି ଧରାଯାଇଥାଏ ।

ବୃହସ୍ପତି କେତୁ, ଶୁକ୍ର ଓ ବୁଧଙ୍କୁ ବିପରୀତରେ ଶୁଭ ଗ୍ରହ-ବୋଲି ଧରାଯାଇଛନ୍ତି । ଅର୍ଥାତ୍:—ବୁଧ ଅଳ୍ପ ଶୁଭ ତା ପରେ ଶୁକ୍ର ଓ କେତୁ ତା ପରେ ବୃହସ୍ପତି ସମସ୍ତଙ୍କଠାରୁ ଶୁଭଗ୍ରହ ଅଟେ । ଏମାନେ ମଧ୍ୟ ଶୁଭ ଗ୍ରହରାଶିରେ ରହିଲେ ଅଧିକ ଶୁଭ ଓ ପାପ-ଗ୍ରହରାଶିସ୍ଥ ହେଲେ ଅଳ୍ପ ଶୁଭ ହୁଅନ୍ତି ।

## ଗ୍ରହମାନଙ୍କ ଶତ୍ରୁରାଶିବିଚାର

“ସିତାସିତାଷ୍ଟ ଯୁଗ୍ମାଷ୍ଟ ସୂର୍ଯ୍ୟସ୍ୟ ରିପୁରାଶୟଃ ।
କୌର୍ପି ତୌଲି ଘଟାଷ୍ଟେନ୍ଦୋ ର୍ଭୌମସ୍ୟ ରିପୁରାଶୟଃ ।
ଘଟମୀନ ନୃଯୁକ୍ ତୌଲି କନ୍ୟାଙ୍କସ୍ୟ ତତଃପରମ୍ ।
କର୍କ ମୀନାଳି କୁମ୍ଭାଷ୍ଟ ରାଶୟୋ ରିପବଃ ସ୍ମୃତାଃ ।
ମେଷସିଂହ ଧନୁଃକୌର୍ପି କର୍କଟାଃ ଶନି ଶତ୍ରବଃ ।
ବୃଷତୌଲି ନୃଯୁକ୍ କନ୍ୟା ରାଶୟୋ ରିପବୋଗୁରୋଃ ।
ସିଂହାଳି କର୍କ ଯୁଗ୍ମାଷ୍ଟ ଶୁକ୍ରସ୍ୟ ରିପୁରାଶୟଃ ।

ଅର୍ଥ:--ରବିଙ୍କର--ବୃଷ, ତୁଳ, କୁମ୍ଭ, ମୀନ ଓ ମିଥୁନ
ଚନ୍ଦ୍ରଙ୍କର--ବିଛା, ତୁଳ ଓ କୁମ୍ଭରାଶି
ମଙ୍ଗଳର--କୁମ୍ଭ, ମୀନ, ମିଥୁନ, ତୁଳ, କନ୍ୟା
ବୁଧର—କର୍କଟ, ମୀନ, ବିଛା, କୁମ୍ଭ,
ବୃହସ୍ପତିର--ବୃଷ, ତୁଳା, ମିଥୁନ, କନ୍ୟା
ଶୁକ୍ରର--ସିଂହ, ବିଛା, ଧନୁ ଓ କର୍କଟ
ଶନିର--ମେଷ, ସିଂହ, ଧନୁ, ବିଛା ଓ କର୍କଟ
ଯଥାକ୍ରମେ ଶତ୍ରୁ ଅଟନ୍ତି ।

## ଗ୍ରହ ଦୃଷ୍ଟି ବିଚାର

## ସୂତ୍ର:-ତନ୍ନିଷ୍ଠାଶ୍ଚ ତଦ୍‌ବତ୍ ।୩।

ଅର୍ଥ:—ଚରାଦି ରାଶିମାନଙ୍କରେ ଥିବା ଗ୍ରହମାନେ ଚରାଦି ରାଶି-ମାନଙ୍କ ସଦୃଶ ଦେଖନ୍ତି ।

ଯଥା:—

ଚରସ୍ଥଂ ସ୍ଥିରଗଃ ପଶ୍ୟେତ୍ ସ୍ଥିରସ୍ଥଂ ଚରରାଶିଗଃ ।

ଉଭୟସ୍ଥଂ ତୁଭୟଗୋ ନିକଟସ୍ଥଂ ବିନା ଗ୍ରହମ୍ ।

ଅର୍ଥ:—ଚର ରାଶିରେ ଥିବା ଗ୍ରହ ନିଜର ଦ୍ୱିତୀୟସ୍ଥ ରାଶି ଓ ଗ୍ରହକୁ ଛାଡ଼ି ଅନ୍ୟ ସମସ୍ତ ସ୍ଥିର ରାଶି ଏବଂ ସ୍ଥିର ରାଶିରେ ଥିବା ଗ୍ରହମାନଙ୍କୁ, ସ୍ଥିରରାଶିସ୍ଥ ଗ୍ରହ ନିଜ ଦ୍ୱାଦଶସ୍ଥ ରାଶି ଓ ଗ୍ରହକୁ ଛାଡ଼ି ଅନ୍ୟ ଚରରାଶି, ଚରସ୍ଥ ଗ୍ରହଙ୍କୁ ଏବଂ ଦ୍ୱିସ୍ୱଭାବସ୍ଥ ଗ୍ରହ ନିଜକୁ ଛାଡ଼ି ଅନ୍ୟ ଦ୍ୱିସ୍ୱଭାବ ରାଶି ଓ ଦ୍ୱିସ୍ୱଭାବସ୍ଥ ଗ୍ରହଙ୍କୁ ଦେଖନ୍ତି ।

ଦ୍ରଷ୍ଟବ୍ୟ:---ଏହି ଦୃଷ୍ଟି ଅନ୍ୟାନ୍ୟ ଗ୍ରହ ଦୃଷ୍ଟିମାନଙ୍କ ଅପେକ୍ଷା ଭିନ୍ନ ହୋଇଥିଲେ ସୁଦ୍ଧା ଫଳ ବିଚାରକାଳ ସମୟରେ ଏହି

ଦୃଷ୍ଟି ବିଚାର ଏକାନ୍ତ କର୍ତ୍ତବ୍ୟ। କାରଣ--ଏହି ଦୃଷ୍ଟିରୁ ଦେଖିଲେ ଅଧିକାଂଶ ସ୍ଥାନରେ ସଠିକ୍ ଫଳ ଘଟୁଛି ।

## ଭାବନିର୍ଣ୍ଣୟ

କଟପୟବର୍ଗ ଭବୈରତ୍ର ପିଣ୍ଡାନ୍ତ୍ୟୈରକ୍ଷରୈରଙ୍କାଃ ।

ନଞେଚ ଶୂନ୍ୟଜ୍ଞେୟେ ତଥାସ୍ୱରେ କେବଲେ କଥିତଂ ।

ଅର୍ଥ:---ଏହି ଗ୍ରନ୍ଥରେ ଅକ୍ଷର ଦ୍ୱାରାହିଁ ଭାବନିର୍ଣ୍ଣୟ କରାଯାଏ ।

ଯଥା:---'କ' ଠାରୁ 'ଝ' ପର୍ଯ୍ୟନ୍ତ ୯ ସଂଖ୍ୟା 'ଟ' ଠୁଁ 'ଧ' ପର୍ଯ୍ୟନ୍ତ ୯, 'ପ' ଠାରୁ 'ମ' ପର୍ଯ୍ୟନ୍ତ ୫, 'ଯ' ଠାରୁ 'ହ' ପର୍ଯ୍ୟନ୍ତ ୮ ସଂଖ୍ୟା, ନ, 'ଞ' ଓ କେବଳ ସ୍ୱରକୁ ଶୂନ୍ୟ ଧରାଯାଏ । ପୁଣି ସଂଯୁକ୍ତ ଅକ୍ଷରମାନଙ୍କର ଅନ୍ତ୍ୟ ଅକ୍ଷରର ସଂଖ୍ୟା ଗ୍ରହଣ କରାଯାଏ । ଉକ୍ତ ଅକ୍ଷରମାନଙ୍କର କ୍ରମିକ ସଂଖ୍ୟାକୁ ୧୨ ଦ୍ୱାରା ହରଣ କରି ଶେଷା-ଙ୍କକୁ ଭାବ ବୋଲି ଗ୍ରହଣ କରାଯାଇଛି ।

## "ଅର୍ଗଳ ଯୋଗ" ବିଗ୍ଭର

## ସୂତ୍ର:—ଦାରଭାଗ୍ୟ ଶୂଲସ୍ଥାଽର୍ଗଳା ନିଧ୍ୟାତୁଃ । ୪ ।

ଅର୍ଥ:—ଯେକୌଣସିଭାବ ବିଗ୍ଭର କାଳସମୟରେ ସେହି ଭାବକୁ ଦେଖୁଥିବା ଗ୍ରହର (ଦାର) ଚତୁର୍ଥ (ଭାଗ୍ୟ) ଦ୍ୱିତୀୟ ଏବଂ (ଶୂଳ) ଏକାଦଶରେ ଯଦି କୌଣସି ଗ୍ରହଥାଏ ତେବେ ଯେଉଁ ଭାବ ବିଗ୍ଭର କରାଯାଉଥିବ ସେହି ଭାବ ଉପରେ ଅର୍ଗଳ ନାମକ ଯୋଗ ହୁଏ ।

ଦ୍ରଷ୍ଟବ୍ୟ:---ଭାବନିର୍ଣ୍ଣୟ ନିୟମାନୁସାରେ 'ଦାର' 'ଦ'ର ସଂଖ୍ୟା ୮, ଏବଂ 'ର' ର ସଂଖ୍ୟା ୨ "ଅଙ୍କାନାଂ ବାମତୋ ଗତିଃ"

ନ୍ୟାଯୁତରେ ୨୮ ହେଲ, ଏହାକୁ ୧୨ ରେ ଭାଗ ଦେବାରୁ ଶେଷ ରହିଲ ୪ । ତେବେ ଜଣାଗଲ ଯେ 'ଦାର' ଅର୍ଥାତ୍--ଚତୁର୍ଥ ଭାବ । ଏହି ହିସାବରେ ସମସ୍ତ ଭାବ ନିର୍ଣ୍ଣୟ କରିବେ ।

ଶୁଭ ବା ପାପ ଗ୍ରହଦ୍ୱାରା ଅର୍ଗଳ ଯୋଗ ହେଲେ ମଧ୍ୟ ଏହାର ଫଳ ସର୍ବଦା ଶୁଭଦାୟକ ।

## ଅନ୍ୟ-ଅର୍ଗଳା ଯୋଗ

## ସୂତ୍ର:-କାମସ୍ଥା ତୁ ଭୂୟସା ପାପାନାମ୍ । ୫ ।

ଅର୍ଥ:--ଦ୍ରଷ୍ଟା ଗ୍ରହର (କାମ) ତୃତୀୟରେ ଅଧିକ ସଂଖ୍ୟକ (ତନୋଟିରୁ ଅଧିକ ସଂଖ୍ୟକ) ପାପଗ୍ରହ ଥିଲେ ଅର୍ଗଳା ଯୋଗହେବ କିନ୍ତୁ ତନୋଟିରୁ କମ୍ ଗ୍ରହଥିଲେ ଏହି ଯୋଗ ହୋଇ ପାରିବ ନାହିଁ ।

ଦ୍ରଷ୍ଟବ୍ୟ:---ଅର୍ଗଳ ଶୁଭ ବା ପାପଗ୍ରହ ସଂଯୋଗରୁ ହୋଇଥାଏ । କିନ୍ତୁ ଏହି ସୂତ୍ରରେ କେବଳ ୩ ଗୋଟିରୁ ଅଧିକ ପାପଗ୍ରହ ଦ୍ୱାରା ଅର୍ଗଳ ଯୋଗ ହେଉଅଛି । ପୁଣି ଏଥି ଦ୍ୱାରା ଏହା ସିଦ୍ଧ ହେଉଛି ଯେ, ତୃତୀୟରେ ଯଦି ତନୋଟିରୁ ଅଧିକ ପାପଗ୍ରହ ଥାନ୍ତି ତେବେ ଏକାଦଶରେ ହେଉଥିବା ଅର୍ଗଳାକୁ ନାଶକରି ନିଜର ଅର୍ଗଳ ଯୋଗ ବିସ୍ତାର କରନ୍ତି ।

## ଅର୍ଗଳ ଯୋଗ ଭଙ୍ଗ

## ସୂତ୍ର:-ରିଃଫ ନୀଚ କାମସ୍ଥା ବିରୋଧିନଃ । ୬ ।

ଅର୍ଥ:---ଦେଖୁଥିବା ଗ୍ରହର (ରିଃଫ) ଦଶମ (ନୀଚ) ଦ୍ୱାଦଶ ଓ (କାମ) ତୃତୀୟରେ ରହିଥିବା ଗ୍ରହମାନଙ୍କ ଦ୍ୱାରା ଅର୍ଗଳା

ଯୋଗ ସବୁ ନଷ୍ଟ ହୁଏ ।

ଅର୍ଥାତ୍:---ଚତୁର୍ଥର ବିରୋଧୀ ଦଶମ, ଦ୍ୱିତୀୟର ଦ୍ୱାଦଶ ଏବଂ ଏକାଦଶର ଅର୍ଗଳ ବିରୋଧୀ ତୃତୀୟସ୍ଥ ଗ୍ରହ ହୁଏ ।

## ସୂତ୍ର:-ନନ୍ୟୂନା ବିବଳାଶ୍ଚ । ୭ ।

ଅର୍ଥ:—ଯେଉଁ ପ୍ରତିବନ୍ଧକ ଗ୍ରହ ଅର୍ଗଳ ଯୋଗ କରୁଥିବା ଗ୍ରହ-ମାନଙ୍କ ଅପେକ୍ଷା ସଂଖ୍ୟାରେ ଅଳ୍ପ ହୋଇଥିବ ବା ଅର୍ଗଳ କର୍ତ୍ତାଠାରୁ ନିର୍ବଳ ହୋଇଥିବ ସେ ପ୍ରତିବନ୍ଧକ ହୋଇ ପାରିବ ନାହିଁ । ଅର୍ଥାତ୍ ଦ୍ରଷ୍ଟା ଗ୍ରହଠାରୁ ୪।୨।୧୧ ରେ ରହୁଥିବା ଗ୍ରହଦ୍ୱାର୍ ଅର୍ଗଳ ଯୋଗ ହୁଏ । ସେହିପରି ୧୦।୧୨।୩ରେ ଯଦି ଅଳ୍ପସଂଖ୍ୟକ ବା ନିର୍ବଳ ଗ୍ରହ ନ ଥାନ୍ତି ତେବେ ତାର ପ୍ରତିବନ୍ଧକ ହୁଏ ।

ଦ୍ରଷ୍ଟବ୍ୟ:—କିନ୍ତୁ ପ୍ରତିବନ୍ଧକ ଗ୍ରହ ଅଳ୍ପସଂଖ୍ୟକ ହୋଇଥିଲେ ସୁଦ୍ଧା ସେମାନେ ଯଦି ଉଚ୍ଚ ବା ନିଜ ରାଶିଗତ ହୋଇ-ଥିବେ ତେବେ ମଧ୍ୟ ପ୍ରତିବନ୍ଧକ ହେବ ।

## ସୂତ୍ର:-ପ୍ରାଗ୍‌ବତ୍‌ ତ୍ରିକୋଣେ । ୮ ।

## ବିପରୀତଂ କେତୋଃ । ୯ ।

ଅର୍ଥ:—ଦ୍ରଷ୍ଟା ଗ୍ରହର ପଞ୍ଚମରେ କୌଣସି ଗ୍ରହ ଥିଲେ ଅର୍ଗଳ ଯୋଗ ହୁଏ । ଯଦି ନବମରେ ଅଳ୍ପସଂଖ୍ୟକ ବା ଦୁର୍ବଳ ଗ୍ରହ

ନଥାଏ, ଅର୍ଥାତ୍-ବଳବାନ୍ ବା ବହୁସଂଖ୍ୟକ ଗ୍ରହ ଯଦି ଥାନ୍ତି ତେବେ ଏହାର ପ୍ରତିବନ୍ଧକ ହୁଏ ।

କେତୁ ବା ରାହୁ ଯଦି ଦ୍ରଷ୍ଟା ହୁଅନ୍ତି, ତେବେ ତାର ନବମସ୍ଥ ଗ୍ରହ ଅର୍ଗଳ ଏବଂ ପଞ୍ଚମସ୍ଥ ବଳବାନ୍ ଗ୍ରହ ପ୍ରତିବନ୍ଧକ ହୁଏ ।

ଦ୍ରଷ୍ଟବ୍ୟ:—ଏହି ଗ୍ରନ୍ଥରେ ଗୋଟିଏ ଭାବର ବିଚାର ସମୟରେ ସଂଖ୍ୟା ଦ୍ୱାରା ଭାବନିର୍ଣ୍ଣୟ କରାଯାଏ । କିନ୍ତୁ ଯେଉଁଠାରେ ଗୋଟିଏ ଶବ୍ଦ ଦ୍ୱାରା ବହୁଭାବ ପ୍ରକଟ ହେଉଥିବ ସେଠାରେ ଅନ୍ୟ ଗ୍ରନ୍ଥ ପ୍ରସିଦ୍ଧ କେନ୍ଦ୍ର, ତ୍ରିକୋଣାଦି ହିସାବରେ ବୁଝିବାକୁ ପଡିବ ।

## କାରକ ବିଚାର

**ସୂତ୍ର:-ଆତ୍ମାଧିକଃ କଳାଦଭିର୍ନଭୋଗଃ-ସପ୍ତାନାମଷ୍ଟାନାଂବା । ୧୦ ।**

ଅର୍ଥ:—ଯେଉଁ ଗ୍ରହ ଅଂଶକଳାଦିରେ ସବୁ ଗ୍ରହଠାରୁ ଅଧିକ ହୁଏ, ତାହାକୁ ଅତ୍ମାକାରକ କହନ୍ତି । କାହାର ମତରେ ସାତଗୋଟି ଏବଂ କାହାକାହା ମତରେ ଆଠଗୋଟି କାରକ ବୋଲି ଗ୍ରହଣ କରାଯାଇଛି ।

କିନ୍ତୁ ଜୈମିନି ମହର୍ଷି ସାତଗୋଟି କାରକ ମାନ ଗ୍ରହଣ କରିଛନ୍ତି । କାରଣ

"ମେଷାଦ୍ୟସବ୍ୟ ମାର୍ଗେଣ ରାହୁକେତୂ ନ କାରକୌ"

## ଆତ୍ମାକାରକର ଗୁଣ ବୈଶିଷ୍ଟ୍ୟ

**ସୂତ୍ର:-ସଈଷ୍ଟେ ବନ୍ଧ ମୋକ୍ଷୟୋଃ । ୧୧ ।**

ଅର୍ଥ:—ଆତ୍ମାକାରକ ଯଦି ଉଚ୍ଚ ବା ଶୁଭଫଯୁକ୍ତାନ୍ଧ ହୋଇଥାଏ ତେବେ ତା'ର ଦଶା ଅନ୍ତରରେ ଶୁଭଫଳଦଏ । ସେ ଯଦି ନୀଚ୍ଚ ଦୁଷ୍ଟ ସ୍ଥାନରେ ଥାଏ ତେବେ ତାହାର ଦଶାଦରେ ବନ୍ଧନାଦି ଦୁଃଖ ଭୋଗ ହୁଏ ।

ଦ୍ରଷ୍ଟବ୍ୟ:—ସବୁଠାରୁ ଆତ୍ମାକାରକ ଗ୍ରହ ପ୍ରଧାନ । ଏହାଦ୍ୱାରାହିଁ ବନ୍ଧନାଦି ଦୁଃଖ ଏବଂ ସମ୍ମାନାଦିମୋକ୍ଷ ପ୍ରାପ୍ତ ହେବାକୁ ହୁଏ । ଆତ୍ମକାରକର ବଶବର୍ତ୍ତୀ ହୋଇ ଅନ୍ୟାନ୍ୟ କାରକ ଗ୍ରହମାନେ ଫଳ ଦାତା ହୁଅନ୍ତି । ଯଥା:—

"ତେଷାଂ ମଧ୍ୟେ ପ୍ରଧାନନ୍ତୁ ଆତ୍ମାକାରକ ଉଚ୍ୟତେ ।
ଜାତକସ୍ୟ ସବନ୍ଧେଚ୍ଛୁଃ ସର୍ବେଷାଂ ମୁଖ୍ୟକାରକଃ ।
ବନ୍ଧକୃନ୍ମୋକ୍ଷ କୃଦ୍ ବତ୍ର ତିଷ୍ଠାଂ ସମ୍ମାନ କାରକଃ ।
ଆତ୍ମ କାରକ ବଶେୟନ ଫଳଦାତାନ୍ୟ କାରକଃ ।"

## ଅମାତ୍ୟ କାରକାଦି ବଗ୍ଦର

**ସୂତ୍ର:-ତସ୍ୟାନୁସରଣା ଦମାତ୍ୟଃ । ୧୨ ।**
**ତସ୍ୟଭ୍ରାତା । ୧୩ । ତସ୍ୟମାତା । ୧୪ ।**
**ତସ୍ୟପୁତ୍ରଃ । ୧୫ । ତସ୍ୟଜ୍ଞାତଃ । ୧୬ ।**
**ତସ୍ୟଦାରାଶ୍ଚ । ୧୭ ।**

ଅର୍ଥ:—ଆତ୍ମକାରକ ଗ୍ରହଠାରୁ ଯେଉଁ ଗ୍ରହର ଅଂଶ ନ୍ୟୂନ ସେ ଅମାତ୍ୟ, ଏହାଠାରୁ ଅଳ୍ପାଂଶ ଭ୍ରାତୃକାରକ, ତାଠାରୁ

ନ୍ୟୂନାଂଶ ମାତୃକାରକ, ଏହାଠାରୁ ନ୍ୟୂନାଂଶ ପୁତ୍ର କାରକ, ଏହାଠୁଁ ନ୍ୟୂନ ଜ୍ଞାତ କାରକ, ସର୍ବାପେକ୍ଷାନ୍ୟୂନାଂଶ ସ୍ତ୍ରୀ କାରକ ଅଟେ ।

## ଅନ୍ୟ ମତେ କାରକ ନିର୍ଣ୍ଣୟ

**ସୂତ୍ର:-ମାତ୍ରାସହ ପୁତ୍ରମେକେ ସମାମନନ୍ତି । ୧୮ ।**

ଅର୍ଥ:—କେହି କେହି ମାତୃକାରକ ସହିତ ପୁତ୍ରକାରକ କଳ୍ପନା କରି ପୁତ୍ରକାରକଠାରେ ପିତୃକାରକ ବିଚାର କରନ୍ତି ।

## ସ୍ଥିରକାରକ ବିଚାର

**ସୂତ୍ର:-ଭଗିନ୍ୟାରତଃ ଶ୍ୟାଲଃ କନୀୟାନ୍-**
**ଜନନୀ ଚ । ୧୯ ।**

ଅର୍ଥ:—ମଙ୍ଗଳଠାରୁ ଭଉଣୀ; ଶାଳକ, ସାନଭାଇ ଓ ମାତା ସମ୍ବନ୍ଧରେ ବିଚାର କରାଯାଏ ।

## ମାତୁଳାଦି କାରକ ବିଚାର

**ସୂତ୍ର:-ମାତୁଳାଦୟୋବନ୍ଧବୋ ମାତୃସଜାତୀୟା-ଇତ୍ୟୁତ୍ତରତଃ । ୨୦ ।**

ଅର୍ଥ:---ବୁଧଠାରୁ ମାତୁଳ ( ମାମୁ ) ପ୍ରଭୃତି ବନ୍ଧୁ, ଓ ମାତୃର---ଭଗିନୀ ଖୁଡ଼ୀ ପ୍ରଭୃତି ( ମାତୃସମ୍ବନ୍ଧ ) ସମ୍ବନ୍ଧରେ ବିଚାର କରିବ ।

## ପିତାମହାଦି କାରକ

**ସୂତ୍ର:-ପିତାମହଃପତି ପୁତ୍ରାବତି ଗୁରୁମୁଖା ଦେବ-
କାନୀୟାତ୍ । ୨୧ ।**

ଅର୍ଥ:---ବୃହସ୍ପତି ଠାରୁ ପିତାମହ ଶୁକ୍ରଠାରୁ ପତି ଏବଂ ଶନିଠାରୁ ପୁତ୍ର ବିଚାର କରାଯାଏ ।

**ସୂତ୍ର:-ପତ୍ନୀ ପିତରୌ ଶ୍ୱଶୁରୌ ମାତାମହା-
ଇତ୍ୟନ୍ତେବାସିନଃ । ୨୨ ।**

ଅର୍ଥ:—ସ୍ତ୍ରୀ, ମାତା, ପିତା, ଶାଶୁ, ଶ୍ୱଶୁର ଓ ମାତାମହ ବିଷୟରେ ମଧ୍ୟ ଶୁକ୍ରଠାରୁ ବିଚାର କରାଯାଏ ।

## ପରାଶର ମତରେ କାରକ ବିଚାର ଯଥା:-

ଅଧୁନା ସଂପ୍ରବକ୍ଷାମି ସ୍ଥିରାଣି କାରକାଣିଚ ।
ସୂର୍ଯ୍ୟାଦୀନାଂ ଗ୍ରହାଣାଂ ଚ ବୀର୍ଯ୍ୟବାନ୍ କାରକୋଭବେତ୍ ।
ବୀର୍ଯ୍ୟବାନ୍ ଜାୟତେ ବିପ୍ର ଉଭୟୋ ରବି ଶୁକ୍ରୟୋଃ ।
ସ ପିତୃକାରକୋ ଜ୍ଞେୟୋ ନିର୍ବିଶଙ୍କ ଦ୍ୱିଜୋତ୍ତମ ।
ଚନ୍ଦ୍ରାରୟୋସ୍ତୁ ବଳବାନ୍ ମାତୃକାରକ ଉଚ୍ୟତେ ।
ଅର୍ଯମ୍ଣ ପୁଣ୍ୟେଭେ ଧାତ ଇନ୍ଦୋର୍ମାତା ଚ ତୁର୍ଯ୍ୟତଃ ।
କୁଜାତ୍ ତୃତୀୟତୋ ଭ୍ରାତା ବୁଧାତ୍ ତୁର୍ଯ୍ୟେ ଚ ମାତୁଳଃ ।
ଦେବେଜ୍ୟାତ୍ ପଞ୍ଚମାତ୍ ପୁତ୍ରୋ ଦୈତ୍ୟେଜ୍ୟାତ୍—
ଦ୍ୟୂନଗାତ୍ସ୍ତ୍ରିୟଃ ।

ଶନେରଷ୍ଟମଂଶେ ମୃତ୍ୟୁ-ର୍ଜ୍ଞଥଂ ତାଭ୍ୟାଦ୍ କାରକାଃ ।
ଅଧୁନା ସମ୍ପ୍ରବକ୍ଷ୍ୟାମି ବିଶେଷଂ ଭାବ କାରକମ୍ ।
ଜନ୍ମ ଲଗ୍ନଂଚ ବିଦ୍ୟାଦ୍ ବୈ ଅତ୍ମାକାରକମେବଚ ।
ଏକାଦଶେ ଜ୍ୟେଷ୍ଠଭ୍ରାତା ତୃତୀୟେତୁ କନିଷ୍ଠକଃ ।
ସୁତେ ସୁତଂ ବିଜାନୀୟାତ୍ ତଥା ସପ୍ତମ ଭାବତଃ ।
ସୁତସ୍ଥାନେ ଗ୍ରହ ସ୍ତିଷ୍ଠେତ୍ ସୋଽପି କାରକଉଚ୍ୟତେ ।

ସମାନ ଅଂଶାବସ୍ଥିତ ଦୁଇ ତତୋଧିକ ଗ୍ରହର କାରକ ବିଷୟର ପାଇଁ

ନିସର୍ଗବଳ ନିର୍ଣ୍ଣୟ

**ସୂତ୍ର:-ମନ୍ଦୋଽଜ୍ୟାୟାନ୍ ଗ୍ରହେଷୁ । ୨୩ ।**

ଅର୍ଥ:—ନୈସର୍ଗିକବଳରେ ସର୍ବାପେକ୍ଷା ହୀନବଳଯୁକ୍ତ ଶନି । ଏହା- ଠାରୁ କ୍ରମରେ ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର, ଚନ୍ଦ୍ର ଓ ରବି ବଳବାନ୍ ଅଟନ୍ତି । ଗ୍ରହମାନଙ୍କର ଅଂଶ ପ୍ରଭୃତି ବଳସାମ୍ୟ ହେଲେ ମଧ୍ୟ ଏମାନଙ୍କ ଭିତରୁ ଅଧିକ ବଳଶାଳୀ ଗ୍ରହକୁ କାରକରୂପେ ସ୍ଥିର କରିବା ଉଚିତ ।

ଚରଦଶା ଗଣନା କ୍ରମ

**ସୂତ୍ର:-ପ୍ରାଚୀବୃତ୍ତିର୍ବିଷମ ଭେଷୁ । ୨୪ ।**

**ପରାବୃତ୍ତ୍ୟୋତରେଷୁ । ୨୫ ।**

ଅର୍ଥ:—ଚରଦଶା ଗଣନା କରିବାକୁ ହେଲେ ବିଷମ ରାଶିର (ମେଷ ମିଥୁନ, ସିଂହ, ତୁଳା, ଧନୁ ଓ କୁମ୍ଭ ) ମେଷ, ବୃଷାଦି

କ୍ରମରେ ଗଣନା କରାଯାଏ । ସମରାଶିରେ ( ବୃଷ, କର୍କଟ କନ୍ୟା, ବୃଶ୍ଚି, ମକର, ମୀନ ) ବୃଷ, ମେଷାଦି ହିସାବରେ ବିପରୀତ ଗଣନା କରାଯାଏ । ପୁଣି:—

## ସୂତ୍ର:–ନ କ୍ୱଚିତ୍ । ୨୬ ।

ଅର୍ଥ:—ଚର ଦଶା ଓ ତ୍ରିକୋଣ ଦଶା-ଗଣନା ସମୟରେ, କୌଣସି କୌଣସି ଠାରେ ବିଷମରାଶିରେ ବିପରୀତ ଗଣନା ଓ ସମରାଶିରେ କ୍ରମଗଣନା ହୁଏ ।

ଯଥା: — 'କ୍ରମାତ୍ ବୃଷେ ବୃଶ୍ଚିକେଚ,ବ୍ୟୁତ୍କ୍ରମାଜ୍ କୁମ୍ଭ ସିଂହୟୋଃ'

ଅର୍ଥାତ୍—ଚରଦଶା ଓ ତ୍ରିକୋଣ ଦଶା ଗଣନା ସମୟରେ ( ବିଷମ ) ସିଂହ ଓ କୁମ୍ଭ ରାଶିର ବିପରୀତ ଗଣନା ଏବଂ ( ସମ ) ବୃଷ ଓ ବୃଶ୍ଚିକ ରାଶିର କ୍ରମ ଗଣନା ହୁଏ ।

ରାଶିମାନଙ୍କର ଚରଦଶା ବର୍ଷାଦି ସାଧନ

## ସୂତ୍ର:–ନାଥାନ୍ତାଃ ସମାଃ ପ୍ରାୟେଣ । ୨୭ ।

ଅର୍ଥ:—ପ୍ରତ୍ୟେକ ଭାବଠୁଁ ତାର ସ୍ୱାମୀ ପର୍ଯ୍ୟନ୍ତ ଦଶା-ବର୍ଷାଦି ବିଚାର ହୁଏ । ଅର୍ଥାତ୍ ପ୍ରଥମେ ଭାବସ୍ପଷ୍ଟ ଓ ଗ୍ରହସ୍ପଷ୍ଟ ସ୍ଥିର କରିବାକୁ ହୁଏ । ଯେଉଁ ଭାବ ବିଷମ ପଦ ରାଶି ହେବ, ସେହି ଭାବସ୍ପଷ୍ଟଠାରୁ ତାହାର ସ୍ୱାମୀସ୍ପଷ୍ଟରୁ ଫେଡ଼ିବ । କିନ୍ତୁ ସମପଦ ଭାବସ୍ପଷ୍ଟରୁ ତାହାର ସ୍ୱାମୀସ୍ପଷ୍ଟକୁ ,( ଅଧିପତି ଗ୍ରହସ୍ପଷ୍ଟକୁ ) ଫେଡ଼ିଲେ ଶେଷରାଶି ତୁଲ୍ୟହିଁ ଦଶା-

ବର୍ଷ ହେବ । ଅବଶିଷ୍ଟ ଅଂଶାଦକୁ ଦ୍ୱିଗୁଣିତ କର, ୫ରେ ଭାଗ କଲେ ଲବ୍ଧ୍ୱାଙ୍କ ମାସ ଓ ଦନ ପ୍ରଭୃତ ହେବ । ଏହ ପ୍ରକାରେ ଦଶା-ବର୍ଷ ଅ.ଦ ସମସ୍ତ ଭାବ ରାଶିମାନଙ୍କର ସ୍ଥିର କରାଯିବ । କନ୍ତୁ ବୃଶ୍ଚିକ ଓ କୁମ୍ଭର ବଶେଷତ୍ୱ ଏହ ଯେ:—

"କୁଜ ସୌରୀ କେତୁରାହୂ ରାଜାନାବଳିକୁମ୍ଭୟୋଃ ।
କୁଜ ସୌରୀ କେତୁରାହୂ ଯୁକ୍ତୌତନ ସ୍ଥିତୌ ଯଦ ।
ବର୍ଷଦ୍ୱାଦଶକଂତନ ନ ଚେଦେକଂ ବନ୍ନିଦ୍ଦିଶେତ୍ ।"

ଅର୍ଥାତ୍:-ବୃଶ୍ଚିକର ସ୍ୱାମୀ ମଙ୍ଗଳ ଓ କେତୁ ଏବଂ କୁମ୍ଭର ସ୍ୱାମୀ ମଧ୍ୟ ଶନି ଓ ରାହୁ । ଏହ ରାଶିର ଦଶା ସାଧନର ନିୟମ ଏହ ଯେ,ଯଦ ଦୁଇଟିଯାକ ସ୍ୱାମୀ ଏକତ୍ରିତ ହୋଇ ସେହ ରାଶିରେ ଥାଆନ୍ତି ତେବେ ଉକ୍ତ ରାଶିର ଦଶା ଯାହାଦ୍ୱାରା ଅଧିକ ଆସିବ, ଏହାଠାରୁହିଁ ଦଶା ସାଧନ କରାଯିବ । ଯଦ ଏ ଦୁହେଁ ଏକାଠି ନ ରହ ଅନ୍ୟତ୍ର ଅବସ୍ଥାନ କରଥାନ୍ତି ତେବେ ଏହାଙ୍କର ପୃଥକ୍ ପୃଥକ୍ ଦଶା-ସାଧନ କରବ; ଉଭୟଙ୍କର ଦଶାପରିମାଣ ଆଧ ବଭିନ୍ନ ହେଲେ ଯେଉଁ ଗ୍ରହ ବେଶୀ ବଳବାନ୍ ହୋଇଥିବ ଏବଂ ଯାହାର ଅଧିକ ପରିମାଣରେ ଦଶାବର୍ଷାଦ ଆସିବ (ବଳବତ୍ତର ଯଥା—ଏକାକୀ-ଥିବାଗ୍ରହ ଦୁର୍ବଳ କନ୍ତୁ ଉଚ୍ଚସ୍ଥବଳୀ । ବହୁଗ୍ରହଯୁକ୍ତ ଗ୍ରହବଳବାନ୍ । ପୁଣି ଚରସ୍ଥଗ୍ରହ ଅପେକ୍ଷା ସ୍ଥିରସ୍ଥ ଗ୍ରହବଳବାନ୍ । ଦ୍ୱିସ୍ୱଭାବସ୍ଥଗ୍ରହ ସର୍ବାପେକ୍ଷା ବଳିଷ୍ଠ ) ତାହାରହିଁ ଦଶା ଗ୍ରହଣ କରାଯିବ । ଏହପର ଦଶା ସ୍ଥିର କରବାବେଳେ ପୁଣି ଉଚ୍ଚସ୍ଥ ଗ୍ରହର ଅଂଶାଦରୁ ମାସାଦ ଆଣି ଏହ ମାସାଦକୁ ଉକ୍ତଗ୍ରହ ଯେଉଁ ରାଶିର ସ୍ୱାମୀ ହୋଇଥିବ ସେହ ସେହ ରାଶିର ଦଶାରେ ମିଶାଇବ ।

ଏହିପରି ଯେଉଁ ରାଶିର ସ୍ୱାମୀ ନୀଚ ହୋଇଥିବ ତାହାର ଅଂଶାଦିରୁ ମାସାଦି ସ୍ଥିର କରି, ଏହି ମାସାଦିକୁ ସେହି ରାଶିର ଦଶା ବର୍ଷମାନରୁ ଫେଡିଦେଲେ ସ୍ପଷ୍ଟଭାବେ ଦଶାମାନ ଜଣାଯିବ । ଏହି ପ୍ରକାର ୧୨ ଟି ରାଶିର ଦଶା ସାଧନ କରିବାକୁ ହେବ ।

ଦ୍ରଷ୍ଟବ୍ୟ—ଲଗ୍ନର ନବମରାଶି ବିଷମ ପଦରେ ପଡିଲେ ଲଗ୍ନାଦି କ୍ରମରେ ଏବଂ ନବମରାଶି ସମପଦରେ ହେଲେ ଲଗ୍ନର ବିପରୀତରେ ଦ୍ୱାଦଶରାଶିର ଦଶା ଲେଖାଯାଏ ।

ଦଶାଠିକ୍ କଲସମୟରେ ଗ୍ରହସ୍ଫୁଟ ସହ ତାର ଭାବସ୍ଫୁଟ ଯଦି ସମାନଥାଏ ତେବେ ସେହି ଦଶାର ମାନ ୧୨ ବର୍ଷ ବୋଲି ସ୍ଥିର କରିବେ ।

ପୁଣି ଯଦି କୁଇଟି କ୍ଷେତ୍ରର ସ୍ୱାମୀ ନିଜର କୌଣସି-ରାଶିରେ ରହି ଅନ୍ୟ କୌଣସି ଭାବସ୍ଫୁଟ ସହ ସମାନ ହେଉଥାଏ ତେବେ ତାର ମଧ୍ୟ ଦ୍ୱାଦଶ ବର୍ଷ ବୋଲି ବୁଝିବାକୁ ହେବ ।

## ପଦ ବା ଆରୂଢ ବିଚାର

## ସୂତ୍ରଃ-ଯାବଦୀଶାଶ୍ରୟଂ ପଦମୃକ୍ଷାଣାମ୍ । ୨୮ ।

ଅର୍ଥ:—ଭାବରୁ ଭାବେଶ ପର୍ଯ୍ୟନ୍ତ ଗଣିଲେ ଯେତେ ସଂଖ୍ୟା ହେବ ତାଠାରୁ ( ଭାବେଶ ଠାରୁ ) ସେତିକ ସଂଖ୍ୟକ ଦୂରରେ ସେହି ଭାବର ପଦ ( ଆରୂଢ ) ହେବ । ସେହିପରି ମଧ୍ୟ ପରାଶରୋକ୍ତ ଯଥା:—

"ଲଗ୍ନା-ଦ୍ୟାବତିଥେସ୍ତି ସ୍ଥେଦ୍ରାଶୌ ଲଗ୍ନେଶ୍ୱରଃକ୍ରମାତ୍ ।
ତତସ୍ତାବତ୍ଥଂ ରାଶିଂ ଲଗ୍ନାରୂଢଂ ପ୍ରଚକ୍ଷତେ ।"

"ଲଗ୍ନା ଲଗ୍ନ-ପଦର୍ଯାବାଦ୍ରାଣି ଫଷ୍ଠସ୍ତତଃ ପୁନଃ ।
ତାବାନ୍ନିଷିଭ ରାରୂଢ଼ଃ କଥିତଃ ସର୍ବ ଶାସ୍ତ୍ରତଃ ।
ଯଦା ଲଗ୍ନାଧିପୋଲଗ୍ନେ ସପ୍ତମେବା ସ୍ଥିତୋ ଯଦ ।
ଆରୂଢ଼ଂ ଲଗ୍ନମେବାକ ନିର୍ଦିଶେଦ୍ଭୁ କାଳ ବିତ୍ତମଃ ।"

**ସୂତ୍ର:-ସ୍ୱସ୍ଥେଦାର୍ । ୨୯ । ସୁତସ୍ଥେ ଜନ୍ମ । ୩୦ ।**

ଅର୍ଥ:—ଯେଉଁ ଭାବର ଅଧିପତି ତାର ଚତୁର୍ଥରେ ଥିବ ସେହି ଚତୁର୍ଥରେହିଁ ତାର ଆରୂଢ଼ ( ପଦ ) ହେବ ।

ପୁଣି ଯାହାର ଅଧିପତି ତାଙ୍କ ସପ୍ତମରେ ଥିବ ସେହିଭାବର ଦଶମରେହିଁ ତାର ( ସେହି ଭାବର ) ଆରୂଢ଼ ପଦ ହେବ ।

ଦ୍ରଷ୍ଟବ୍ୟ—ସ୍ପଷ୍ଟ ନିୟମ ଏହି ଯେ, ଭାବସ୍ଥ ଠାରୁ ଭାବେଶସ୍ଥ ଠାରୁ ଯେତେ ଯେତେ ଘରକୁ ଭାବେଶରେ ମିଶାଇଲେ ତାହା ସେହି ଭାବର ( ଆରୂଢ଼ ) ପଦ ହେବ ।ଯଥା:—

"ଗ୍ରହେ ଭାବଶୁଦ୍ଧେଃବଶିଷ୍ଟାଂଚ୍ଚ ଯୋଜ୍ୟଂ—
ଗ୍ରହେ ସ୍ପଷ୍ଟ-ମାରୂଢ଼ ସଂଜ୍ଞଂ ଭବେତ୍ତତ୍ର ।
ସୁଖସ୍ଥେ ସୁଖଂ ବ୍ୟୟନଭେ କର୍ମଭଂ ଚ--
ସୁସୂକ୍ଷ୍ମଂ ପଦଂଜୈମିନୀୟେ ନିରୁକ୍ତମ୍ ।"

ଫଳ ବିଚାର ଓ ଆୟୁଃସାଧନରେ ଆରୂଢ଼ର ବହୁ ପ୍ରାଧାନ୍ୟ ରହିଛି । ଉକ୍ତ ନିୟମ ଅନୁସାରେହିଁ ଆରୂଢ଼ ଚକ୍ର ତିଆର କରିବା ଉଚିତ ।

ଭାବାଦି ବିଚାରରେ ସନ୍ଦେହ ମୋଚନ

## ସୂତ୍ର:-ସର୍ବତ୍ରସବର୍ଣ୍ଣା ଭାବା ରାଶୟଶ୍ଚ । ୩୧ ।

ଅର୍ଥ:---ଏହି ଗ୍ରନ୍ଥରେ ଭାବ, ଲଗ୍ନ ଓ ମେଷାଦି ରାଶି ଅକ୍ଷରାଦି କ୍ରମରେ ବୁଝିବାକୁ ହେବ ।

### ହୋରାଲଗ୍ନ ବିଚାର

ଇଷ୍ଟ ସମୟକୁ ୧୫୦ ରେ ହରଣ କଲେ ଲବ୍ଧ ରାଶ୍ୟଂଶାଦି ଆସିବ । ଏହି ଲବ୍ଧିକୁ ରବିସ୍ଫୁଟରେ ମିଶାଇଲେ ମିଶାଣ ଫଳହିଁ ହୋରାଲଗ୍ନ ହେବ ।

କିନ୍ତୁ ଏହିଲବ୍ଧି ବିଷମ ରାଶି ହେଲେ ତା ସହି ରବିସ୍ଫୁଟ ଓ ସମ ରାଶିହେଲେ ଲଗ୍ନସ୍ଫୁଟ ମିଶାହେବ ବୋଲି କେହି କେହି କହନ୍ତି, ବାସ୍ତବିକ ଦେଖିବାକୁ ଗଲେ ରବିସ୍ଫୁଟହିଁ ମିଶିବା ଉଚିତ ।

### ବର୍ଣ୍ଣଦ ରାଶି

ଜନ୍ମଲଗ୍ନ ଓ ହୋରା ଲଗ୍ନର ଯୋଗକୁ ବର୍ଣ୍ଣଦ ରାଶି କହନ୍ତି । ଏହି ଯୋଗ ବିଷମ ରାଶିରେ ହେଲେ ସେହିଠାରୁ ଏବଂ ସମ-ରାଶିରେ ହେଲେ ୧୨ରୁ ଫେଡି ବର୍ଣ୍ଣଦ ରାଶି ସ୍ଥିରହୁଏ । ଏହିପରି ଦ୍ୱାଦଶଟି ବର୍ଣ୍ଣଦ ସ୍ଥିରକଲା ପରେ ତାର ଦଶା ବିଚାର କରାଯିବ ।

### ବର୍ଣ୍ଣଦ ଦଶା

ଜନ୍ମଲଗ୍ନ ଓ ହୋରାଲଗ୍ନ ଉଭୟରୁ ଯେ ବଳବାନ୍ ସେ ଯଦି ବିଷମସ୍ଥ ହୋଇଥିବ ତାହାକୁ ବର୍ଣ୍ଣଦରୁ ଫେଡ଼ାଯିବ । ଯଦି ସେ

ସମହୋଇଥାଏ ତେବେ ଏଥିରୁ ବର୍ଣ୍ଣଦକୁ ଫେଡା ହେବ । ଶେଷ-ରାଶି ତୁଲ୍ୟ ବର୍ଷ ଏବଂ ଏହାର ଅଂଶାଦକୁ ପୂର୍ବପର ମାସାଦ କର ବର୍ଣ୍ଣଦ ଦଶା ସ୍ଥିର କରାହେବ । ଏହିପର ଦ୍ୱାଦଶଟିରାଶିର ଦଶାସ୍ଥିର କର, ଜନ୍ମ ଲଗ୍ନ ବିଷମ ହୋଇଥିଲେ ଲଗ୍ନାଦ କ୍ରମରେ ଏବଂ ସମ ହୋଇଥିଲେ ବିପରୀତରେ ଦଶା ଗୁଡିକ ଭୋଗ ହୁଏ ।

## ସୂତ୍ରଃ—ନ ଗ୍ରହାଃ । ୩୨ ।

ଅର୍ଥଃ---ଗ୍ରହମାନଙ୍କୁ ସଂଖ୍ୟା ବୋଧକ ଅକ୍ଷର ଦ୍ୱାରା ବୁଝିବ ନାହିଁ । ଏବଂ ଗ୍ରହମାନଙ୍କର ବର୍ଣ୍ଣଦ ଦଶା ମଧ୍ୟ ହୋଇ ପାରିବ ନାହିଁ ।

ଅନ୍ତର୍ଦଶା ବିଚାର

## ସୂତ୍ରଃ—ଯାବତ୍ ବିବେକ-ମାବୃତ୍ତିର୍ଭ୍ନାମ୍ । ୩୩ ।

ଅର୍ଥଃ---କୌଣସି ରାଶିର ଦଶାମାନଙ୍କୁ ଦ୍ୱାଦଶ ଭାଗକଲେ ଏକ ଏକ ଭାଗହିଁ ପ୍ରତ୍ୟେକ ରାଶିର ଅନ୍ତର୍ଦଶା ମାନ ହେବ । ବିଷମରାଶିର ତାଠାରୁ କ୍ରମରେ ଏବଂ ସମ ରାଶିର ତାଠୁଁ ବିପରୀତରେ ଅନ୍ତର ଭୋଗ ହୁଏ ।

ହୋରାଦ ବିଚାର

## ସୂତ୍ରଃ—ହୋରାଦୟଃ ସିଦ୍ଧାଃ । ୩୪ ।

ଅର୍ଥଃ—ହୋରା ପ୍ରଭୃତି ଅନ୍ୟ ଗ୍ରନ୍ଥରୁ ବୁଝିବାକୁ ହେବ। ଯଥାଃ—

"ସୂର୍ଯ୍ୟେନ୍ଦ୍ୱୋର୍ବିଷମେ ରାଶୌ ସମେତଦ୍ ବିପରୀତକମ୍ ।
ପିତରଶ୍ଚନ୍ଦ୍ରହୋରେଶା ଦେବାଃସୂର୍ଯ୍ୟସ୍ୟ କୀର୍ତ୍ତିତାଃ ।"

ଅର୍ଥ:—ପ୍ରତ୍ୟେକ ରାଶି ଓ ପ୍ରତ୍ୟେକ ଲଗ୍ନରେ ଦୁଇ ଗୋଟି ହୋରା । ଲଗ୍ନ ବା ରାଶିକୁ ସମାନ ଦୁଇ ଭାଗ କଲେ ପ୍ରତ୍ୟେକ ଭାଗ ଗୋଟିଏ ଗୋଟିଏ ହୋରା ହୁଏ । ବିଷମ ରାଶିର ପ୍ରଥମ ହୋରାଧିପତି ରବି ଓ ଶେଷ ହୋରାଧିପତି ଚନ୍ଦ୍ର । ସମରାଶିର ଅାଦ୍ୟହୋରାଧିପତି ଚନ୍ଦ୍ର ଓ ଶେଷହୋରାଧିପତି ରବିଅଟେ ।

ଦ୍ରେକ୍କାଣ

"ରାଶେସ୍ତ୍ରିଭାଗୋଦ୍ରେଷ୍କାଣଃସ୍ତେଚ ଷଟ୍ତ୍ରିଂଶଦୀରିତାଃ ।
ପରିବୃତ୍ତିତ୍ରୟଂ ତେଷାଂ ମେଷାଦେଃକ୍ରମଶୋଭବେତ୍ ।"

ଅର୍ଥ:—ପ୍ରତ୍ୟେକ ରାଶି ଅଂ ୩୦ ଶ । ଏହିଅଂଶକୁ ତିନି ଭାଗରେ ବିଭକ୍ତ କଲେ ପ୍ରତ୍ୟେକ ଅଂ ୧୦ ଶକୁ ଏକ ଏକ ଦ୍ରେକ୍କାଣ କହନ୍ତି । ଏଣୁ ପ୍ରତ୍ୟେକ ରାଶିର ତିନିଗୋଟି ଦ୍ରେକ୍କାଣ ସ୍ଥିରକରା ଯାଇଛି । ମୋଟରେ ୩୬ ଗୋଟି ଦ୍ରେକ୍କାଣରୁ ୧୮ ଗୋଟି ପୁରୁଷ ଦ୍ରେକ୍କାଣ ଏବଂ ୧୮ ଗୋଟି ସ୍ତ୍ରୀ ଦ୍ରେକ୍କାଣ ଅଟେ ।

ନବମାଂଶ

"ନବାଂଶେଶାଶ୍ଚରେ ତସ୍ମାତ୍ ସ୍ଥିରେ ନବମ ମାଦିତଃ ।
ଉଭୟେ ତତ୍ ପଞ୍ଚମାଦେତ୍ୟେତି ଚିନ୍ତ୍ୟଂ ବିଚକ୍ଷଣୈଃ ।"

ଅର୍ଥ:—ନବାଂଶାଧିପତି ନିଶ୍ଚୟ କରିବାକୁ ହେଲେ ଚରରାଶି-ମାନଙ୍କର ସେହି ରାଶି ଠାରୁ, ସ୍ଥିର ରାଶିମାନଙ୍କର ସେହି ରାଶିର ନବମରୁ, ଦ୍ୱାତ୍ମିକ ରାଶିମାନଙ୍କର ସେହି

ରାଶିର ପଞ୍ଚମରୁ, ପ୍ରତ୍ୟେକ ରାଶିରେ ୩ ଅଂଶ ୨୦ କଳା ହିସାବରେ ଦେଇ ନେଲେ ଯେଉଁ ରାଶିରେ ସ୍ଫୁଟାଂଶ ଶେଷ ହେବ, ସେହି ରାଶ୍ୟାଧିପତି ନବାଂଶାଧିପତି ହେବ।

## ସପ୍ତମାଂଶ

"ସପ୍ତମାଂଶ ସ୍ତ୍ୱୋଜ ଗୃହେ ଗଣନୀୟା ବିଶେଷତଃ ।
ଯୁଗ୍ମ ରାଶୌତୁ ବିଜ୍ଞେୟାଃ ସପ୍ତମର୍କ୍ଷାଦି ନାୟକାଃ ।"

ଅର୍ଥ:---୩୦ ଅଂଶକୁ ସମାନ ସାତ ଭାଗରେ ବିଭକ୍ତ କଲେ ପ୍ରତ୍ୟେକ ଅଂଶକୁ ଏକ ସପ୍ତମାଂଶ କହନ୍ତି। ଓଜରାଶିରେ ନିଜ ଗୃହରୁ ଓ ଯୁଗ୍ମରାଶିରେ ନିଜର ସପ୍ତମ ରାଶିରୁ ଅଧିପତି ନିର୍ଣ୍ଣୟ କରିବାକୁ ହେବ । ତାର ନ୍ୟାୟ-- "ଓଜେ ସ୍ୱଗୃହାତ୍ ସମେତ୍ୱ ସପ୍ତମାତ୍"

## ଦ୍ୱାଦଶାଂଶ

"ଦ୍ୱାଦଶାଂଶସ୍ୟ ଗଣନା ତତ୍ତତ୍ କ୍ଷେତ୍ରାଦ୍ବିନିର୍ଦ୍ଦିଶେତ୍ ।
ସର୍ବେଷାଂ ମେଷ ପୂର୍ବାଣାଂ ସ୍ୱର୍କ୍ଷାଦ୍ୟା ଦ୍ୱାଦଶାଂଶକାଃ ।
ଲଗ୍ନମାନଂ ବ୍ୟବସ୍ଥାପ୍ୟ ଦ୍ୱାଦଶେ ସ୍ୱେବଶିଷ୍ଟ୍ୟ ।
କୃତ୍ୱାଦ୍ୱାଦଶ ଭାଗାସ୍ତୁ ଗଣୟେତ୍ ସ୍ୱ ଗୃହାଦ୍ ବୁଧଃ ।

ଅର୍ଥ:—ପ୍ରତ୍ୟେକ ରାଶି ବା ଲଗ୍ନକୁ ବାର ଭାଗରେ ବିଭକ୍ତ କଲେ ପ୍ରତ୍ୟେକ ଭାଗକୁ ଏକ ଏକ ଦ୍ୱାଦଶାଂଶ କହନ୍ତି । ଯେଉଁ ରାଶିର ଦ୍ୱାଦଶାଂଶ ଗଣନା କରିବାକୁ ହେବ ସେହିଠାରୁ ୨ ଅଂଶ ୩୦ କଳା ହିସାବରେ ଦେଇ ନେଲେ ଯେଉଁ-

ଠାରେ ସ୍ଫୁଟାଂଶ ଶେଷ ହେବ ସେହି ହେବ. ଦ୍ୱାଦଶାଂଶାଧିପତି ।

ତ୍ରିଂଶାଂଶ

"ତ୍ରିଂଶାଂଶେଷୋଷ୍ଟ ବିଷମେ କୁଜାର୍କିଜ୍ୟଜ୍ଞ ଭାର୍ଗବାଃ ।
ପଞ୍ଚ ପଞ୍ଚାଷ୍ଟ ସପ୍ତାକ୍ଷା ଭାଗାବ୍ୟତ୍ୟୟତଃ ସମେ ।"

ଅର୍ଥ:—ପ୍ରତ୍ୟେକ ରାଶିକୁ ୩୦ ଅଂଶରେ ବିଭକ୍ତ କଲେ ପ୍ରତ୍ୟେକ ଅଂଶକୁ ଏକ ତ୍ରିଂଶାଂଶ କହନ୍ତି । ଏମାନଙ୍କ ଅଧିପତି କର୍ତ୍ତୃତ୍ୱ ଏହି ଯେ—ବିଷମ ରାଶିର ପ୍ରଥମ ପାଞ୍ଚ ଅଂଶର ଅଧିପତି ମଙ୍ଗଳ, ୨ୟ ପାଞ୍ଚ ଅଂଶର ଅଧିପତି ଶନି, ତୃତୀୟ ଆଠ ଅଂଶ ବୃହସ୍ପତି, ୪ର୍ଥ ସାତ ଅଂଶର ଅଧିପତି ଶୁକ୍ର । ସମ ରାଶିରେ ଠିକ୍ ଏହାର ବିପରୀତ ହିସାବରେ ଗଣନା କରିବାକୁ ହୁଏ ।

—:୦:—

## ଅଥ ପ୍ରଥମ ଅଧ୍ୟାୟସ୍ୟ ଦ୍ୱିତୀୟ ପାଦଃ

ଅଥ ଆତ୍ମାଧିକଃ କଳାଦଭିର୍ନଭୋଗଃ ସପ୍ତାନାମଷ୍ଟାନାଂ ବା"
ଏହି ସୂତ୍ରୋକ୍ତ ଆତ୍ମକାରକ ଫଳ ବିଚାର ।
( ଯେପରି ନବାଂଶ ଲଗ୍ନ ସ୍ଥିର କରିବାକୁ ହୁଏ ଠିକ୍ ସେହିପରି ଆତ୍ମାକାରକର ସ୍ଫୁଟକୁ ଧରି ଆତ୍ମକାରକ ନବାଂଶ ଲଗ୍ନ ସ୍ଥିର କରିବାକୁ ହେବ )

**ସୂତ୍ର:-ଅଥ ସ୍ୱାଂଶୋ ଗ୍ରହାଣାମ୍ । ୧ । ପଞ୍ଚ ମୂଷିକମାର୍ଜାରାଃ । ୨ । ତତ୍ର ଚତୁଷ୍ପାଦଃ । ୩ । ମୃତ୍ୟୌ କଣ୍ଡୂ ସ୍ଥୌଲ୍ୟଂଚ । ୪ ।**

**ଦ୍ଵରେ ଜଲ କୁଷ୍ଠାଦଃ । ୫ ।**

**ଶେଷାଃ ଶ୍ଵାପଦାନ୍ନ । ୬ । ମୃତ୍ୟୁବନ୍ତ୍ୱାଗ୍ନ୍ୟଗ୍ନି**

**କଣଶ୍ଚ । ୭ ।**

ଅର୍ଥ:—ଅସ୍ତ୍ରକାରକାଂଶ ଲଗ୍ନ ( ପଞ୍ଚ ) ମେଷ ରାଶିରେ ହେଲେ ମୂଷିକ ଓ ମାର୍ଜାର ଠାରୁ ଦୁଃଖ ମିଳେ, ( ତନ୍ନ ) ବୃଷରେ ଚତୁସ୍ପଦ ( ଗୋରୁ ମହିଷ ପ୍ରଭୃତି ) ହେତୁକ ସୁଖ ଲଭ-ହୁଏ । ( ମୃତ୍ୟୌ ) ମିଥୁନରେ କଣ୍ଡୂ ରୋଗ ଓ ସ୍ଥୌଲ୍ୟ (ମେଦବୃଦ୍ଧି) ରୋଗ ମଧ୍ୟ ହୁଏ । ( ଦ୍ଵରେ ) କର୍କଟରେ କାରକାଂଶ ଲଗ୍ନ ହେଲେ ଜଳଭୟ ଓ କୁଷ୍ଠରୋଗ ଜାତ-କରାଏ । ( ଶେଷ ) ସିଂହରେ କୁକୁର ପ୍ରଭୃତି ହିଂସ୍ର-ଜନ୍ତୁଠାରୁ କଷ୍ଟ ଭୋଗ ହୁଏ । ( କାସ୍ଥା ) କନ୍ୟା ରାଶିରେ କଣ୍ଡୂରୋଗ, ସ୍ଥୂଲତା ଓ ଅଗ୍ନିଭୟ ହୁଏ ।

**ସୂତ୍ର:-ଲାଭେ ବାଣିଜ୍ୟମ୍ । ୮ । ଅନ୍ତ୍ରଜଲ**

**ସରୀସୃପାଃ ସ୍ତନ୍ୟହାନିଶ୍ଚ । ୯ । ସମେ**

**ବାହନାଦୁ ଚାଚ କ୍ରମାତ୍ ପତନମ୍ । ୧୦ ।**

**ଜଲଚର ଖେଚର ଖେଟ କଣ୍ଡୂ ଦୁଷ୍ଟଗ୍ରଂଥୟଶ୍ଚ**

**ରଷ୍ଫେ । ୧୧ । ତଡାଗଯ୍ୟୋଧର୍ମେ । ୧୨ ।**

**ଉଚ୍ଚେ ଧର୍ମନିତ୍ୟତା କୈବଲ୍ୟଂ ଚ । ୧୩ ।**

ଅର୍ଥ:—( ଲଭ ) ତୁଳାରେ କାରକାଂଶ ଲଗ୍ନ ହେଲେ ବାଣିଜ୍ୟ କର୍ମ । (ଅନ୍ତ୍ର) ବୃଶ୍ଚିକରେ ଜଳ ଓ ସର୍ପାଦି ଭୟ ରହେ ଏବଂ ମାତୃ ଦୁଗ୍ଧ ହାନି ଘଟେ । (ସମ) ଧନୁରେ ବାହନ

ବା ଉଚ୍ଚସ୍ଥାନରୁ ପତନ ଘଟେ । (ବୈଷ୍ଣବ) ମକରରେ ଜଳଚର, ପକ୍ଷୀ ଦ୍ୱାରା କଷ୍ଟ ଓ କଣ୍ଠରୋଗ ଜାତହୁଏ । ବା ଗ୍ରନ୍ଥି ଗଣ୍ଡମାଳାଦି ରୋଗଭୟ ହୁଏ । (ଧର୍ମ) କୁମ୍ଭରେ କୂପ ତଡ଼ାଗାଦି ନିର୍ମାଣକର୍ତ୍ତା ହୁଏ । ( ଉଚ୍ଚେ ) ମୀନରେ କାରକାଂଶ ଲଗ୍ନ ହେଲେ ଜାତକ ଧର୍ମକର୍ତ୍ତା ଓ ମୋକ୍ଷାଭିଳାଷୀ ହୁଏ । ସେହିପରି ପରାଶରଙ୍କ ଯଥା:—

"ଶୁଭରାଶୌ ଶୁଭାଂଶେ ବା କାରକାଂଶେ ଧନୀ ଭବେତ୍ ।
ତଦଂଶ କେନ୍ଦ୍ରେଷୁ ଶୁଭେ ରାଜାନୂନଂ ପ୍ରଜାୟତେ ।
କାରକେ ଶୁଭରାଶ୍ୟଂଶେ ଲଗ୍ନାଂଶସ୍ଥେ ଶୁଭଗ୍ରହେ ।
ଉଚ୍ଚଗ୍ରହସ୍ୟ ଯ୍ନୈଷ୍ଟାତ୍ରେ୍ୟ ଯ୍ନୋଚଦୂର୍ଷ ଶୁଭର୍ଷଗେ ।
ପାପଦୃଗ୍ ଯୋଗ ରହିତେ କୈବଲ୍ୟଂ ତସ୍ୟ ନିର୍ଦ୍ଦିଶେତ୍ ।
ମିଶ୍ରେ ମିଶ୍ରଂ ବିଜାନୀୟାଦ୍ଧି ର୍ଯିତେ ବିପର୍ଯ୍ୟୟଂ ।
ଚନ୍ଦ୍ରେ ଭୃଗ୍ୱାର ବର୍ଗସ୍ଥେ କାରକେ ପାରଦାରିକଃ ।
ବୁଧଶୌଲେଂଶକ ଗଧେ ତସ୍ମିନ୍ ବାଣିଜ୍ୟବାନ୍ ଭବେତ୍
ମେଷସିଂହାଂଶକେ ତସ୍ମିନ୍ ବ୍ରୂୟାନ୍ ମୂଷିକ ଦଂଶନମ୍ ।
କାରକେ କାର୍ମୁକାଂଶସ୍ଥେ ବାହନାତ୍ ପତନଂ ଭବେତ୍ ।

## କାରକାଂଶ ଗ୍ରହସ୍ଥିତ ଫଳ ବିଚାର

---

## ସୂତ୍ର:-ତତ୍ରରବୌ ରାଜକାର୍ଯ୍ୟ ପରଃ । ୧୪ ।

## ପୂର୍ଣ୍ଣେନ୍ଦୁ ଶୁକ୍ରୟୋର୍ଭୋଗୀ-

ବ୍ରଦଧ୍ୟାଜୀବୀ ଚ । ୧୫ । ଧାତୁବାଦୀ
କୌନ୍ତାୟୁଧୋ ବହ୍ନିଜୀବୀଚ ଭୌମେ ।୧୬।
ବଣିକସ୍ତନ୍ତୁବାୟୁଃଶିଳ୍ପିନୋ ବ୍ୟବହାର
ବ୍ରଦଶ୍ଚ ସୌମ୍ୟେ । ୧୭ । କର୍ମଜ୍ଞାନନିଷ୍ଠା
ବେଦବ୍ରଦଶ୍ଚ ଜୀବେ । ୧୮ । ରାଜକୀୟଃ
କାମିନଃ ଶତେନ୍ଦ୍ରିୟାଶ୍ଚ ଶୁକ୍ରେ । ୧୯ ।
ପ୍ରସିଦ୍ଧ-କର୍ମାଜୀବଃ ଶନୌ । ୨୦ ।
ଧାନୁଷ୍କାଶ୍ଚୌରାଶ୍ଚ ଜାଙ୍ଗଳକା ଲୌହ-
ଯନ୍ତ୍ରିଣଶ୍ଚ ରାହୌ । ୨୧ । ଗଜବ୍ୟବହାରଣ-
ଶ୍ଚୌରାଶ୍ଚ କେତୌ । ୨୨ । ରବିରାହୁଭ୍ୟାଂ
ସର୍ପ ନିଧନମ୍ । ୨୩ । ଶୁଭଦୃଷ୍ଟେ
ତନ୍ନିବୃତ୍ତିଃ । ୨୪ । ଶୁଭମାତ୍ର ସମ୍ବନ୍ଧା-
ଜ୍ଜାଙ୍ଗଳକଃ । ୨୫ । କୁଜମାତ୍ର ଦୃଷ୍ଟେ
ଗୃହଦାହକୋଽଗ୍ନିଦୋବା । ୨୬ ।
ଶୁକ୍ରଦୃଷ୍ଟେର୍ନ ଦାହଃ । ୨୭ । ଗୁରୁଦୃଷ୍ଟେସ୍ତ୍ୱ
ସମୀପ ଗୃହାତ୍ । ୨୮ ।

ଅର୍ଥ:---କାରକାଂଶ ଲଗ୍ନରେ ରବିଥିଲେ ରାଜ-କାର୍ଯ୍ୟକର୍ତ୍ତା, ପୂର୍ଣ୍ଣ-ଚନ୍ଦ୍ର ଓ ଶୁକ୍ର ଥିଲେ ଭୋଗୀ ଏବଂ ବିଦ୍ୟାଜୀବୀ ହୁଏ ।

ମଙ୍ଗଳଥିଲେ ରସାୟନଜ୍ଞ, ଶସ୍ତ୍ରଧାରୀ ଓ ଅଗ୍ନିଜୀବୀ (ଧୂନାଗ୍ନି କାର୍ଯ୍ୟକର୍ତ୍ତା) ହୁଏ । ବୁଧ କାରକାଂଶସ୍ଥ ହେଲେ ବାଣିଜ୍ୟକାରୀ, ସୂତ୍ର (ସୂତା) ନିର୍ମାଣକର୍ତ୍ତା, ଶିଳ୍ପୀ (ଶିଳ୍ପକାର) ଓ ବ୍ୟବହାରଜ୍ଞ ହୁଏ । ବୃହସ୍ପତି ଥିଲେ କର୍ମ-କୁଶଳ, ଜ୍ଞାନୀ ଓ ବେଦବିତ୍ ହୁଏ, କାରକାଂଶରେ ଶୁକ୍ରଥିଲେ ରାଜ-କାର୍ଯ୍ୟକର୍ତ୍ତା କାମ କଳା ପଟୁ ଓ ଶତବର୍ଷଜୀବୀ ହୁଏ । ଶନି କାରକାଂଶସ୍ଥ ହେଲେ ପ୍ରସିଦ୍ଧ କର୍ମଦ୍ୱାରା ଜୀବିକା ନିର୍ବାହ କରେ । ରାହୁ ଦ୍ୱାରା ଧନୁର୍ବିଦ୍ୟା ପ୍ରବୀଣ, ଚୌର, ବା ବିଷବୈଦ୍ୟ ଓ ଲୌହଯନ୍ତ୍ରକାରୀ ହୁଏ । କେତୁ କାରକାଂଶସ୍ଥ ହେଲେ ହସ୍ତିବ୍ୟବହାରକାରୀ ଓ ଚୌର ମଧ୍ୟ ହୁଏ ।

ରବି ଓ ରାହୁ ଉଭୟେ କାରକାଂଶସ୍ଥ ହେଲେ ମଧ ସର୍ପଦ୍ୱାରା ମୃତ୍ୟୁ ହୁଏ ।

କିନ୍ତୁ କାରକାଂଶରେ ରବି ରାହୁ ଯୁକ୍ତ ହୋଇ ଶୁଭଦୃଷ୍ଟି ହେଉଥିଲେ ସର୍ପଠାରୁ ମୃତ୍ୟୁଭୟ ହେବ ନାହିଁ । କାରକାଂଶରେ ରାହୁ ରବି ଯୁକ୍ତ ହୋଇ ବହୁ ଶୁଭ ଗ୍ରହର ସମ୍ବନ୍ଧ ରହୁଥିଲେ ଜାତକ ବିଷବୈଦ୍ୟ ହୁଏ । ସେହି-ପରି ମଧ

"କାରକାଂଶେ ତମୋଭାନୂ ଶୁଭଦୃଡ୍ ବର୍ଗ ସଂଯୁତୌ ।
ବିଷବୈଦ୍ୟୋ ଭବେନ୍ନୂନଂ ବିଷହର୍ତ୍ତା ବିଚକ୍ଷଣଃ ।"

କାରକାଂଶରେ ରବି ରାହୁଯୁକ୍ତ ହୋଇ କେବଳ ମଙ୍ଗଳ ଦେଖୁଥିଲେ ଗୃହ ଦାହକ ବା ଅଗ୍ନିଦ ହୁଏ ।

ଯଥା:—"ଭୌମେକ୍ଷିତେ କାରକାଂଶେ ଭାନୁସ୍ୱର୍ଭାନୁ ସଂଯୁତେ ।
ଅନ୍ୟତ୍ରସ୍ଥା ନ ପଶ୍ୟନ୍ତି ସ୍ୱ ବେଶ୍ମ ଘରଦାହକଃ ;"

ରବିରାହୁଯୁକ୍ତ କାରକାଂଶକୁ ଶୁକ୍ର ମଙ୍ଗଳ ଦେଖୁଥିଲେ ଗୃହଦାହ ଯୋଗ ହେବନାହିଁ କିନ୍ତୁ ଅଗ୍ନିଦାହ ହେବ । ସେହିପରି ବୃହସ୍ପତି ଓ ମଙ୍ଗଳ ଦେଖୁଥିଲେ ନିକଟସ୍ଥ ଗୃହପର୍ଯ୍ୟନ୍ତ ଦହନ ହେବ, କିନ୍ତୁ ସ୍ୱ ଗୃହଦହନ ହେବନାହିଁ ।

ଯଥା:—"ଯଦି ସୌମ୍ୟେକ୍ଷିତେ ସ୍ୱାଂଶେ ହ୍ୟଗ୍ନିଦୋ ନୈବ ଜାୟତେ ।
ପାପର୍କ୍ଷେ୍ୟର ଗୁରୁଦୃଷ୍ଟେଃ ସମୀପ ଗୃହଦାହକଃ ।"

### ଗୁଳିକସହ କାରକାଂଶ ଫଳ

**ସୂତ୍ର:—ସଗୁଳିକେ ବିଷଦୋ ବିଷହତୋବା । ୨୯ ।**

ଅର୍ଥ:—ଗୁଳିକ ଲଗ୍ନସହିତ ଯଦି କାରକାଂଶ ଲଗ୍ନ ହୁଏ ତେବେ ଅନ୍ୟକୁ ବିଷଦିଏ ବା ନିଜେ ବିଷଦ୍ୱାରା ମରେ ।

### ଗୁଳିକ ଲଗ୍ନ ନିର୍ଣ୍ଣୟ ପ୍ରକାର

"ରବିବାରାଦି ଶନ୍ୟନ୍ତଂ ଗୁଳିକାଦି ନିରୂପ୍ୟତେ ।
ଦିବସାନଷ୍ଟଧା ଭକ୍ତ୍ୱା ବାରେଶାଦ୍ ଗଣୟେତ୍ କ୍ରମାତ୍ ।
ଅଷ୍ଟମୋଂଶୋ ନିରୀଶଃ ସ୍ୟାଚ୍ଛନ୍ୟଂଶୋ ଗୁଳିକଃ ସ୍ମୃତଃ ।
ରାତ୍ରିରପ୍ୟଷ୍ଟଧା ଭକ୍ତ୍ୱା ବାରେଶାତ୍ ପଞ୍ଚମା ଦିତଃ ।
ଗଣୟେଦଷ୍ଟମଃ ଖଣ୍ଡୋ ନିଷ୍ପତିଃ ପରିକୀର୍ତ୍ତିତଃ ।

ଶନ୍ୟଂଶୋ ଗୁଳିକଃ ପ୍ରୋକ୍ତୋ ଗୁର୍ବଂଶୋ ଯମ ଘଣ୍ଟକଃ ।
ଭୌମାଂଶୋ ମୃତ୍ୟୁରିତ୍ୟୁକ୍ତୋ ରବ୍ୟଂଶଃ କାଳ ସଂଜ୍ଞକଃ ।
ସୌମ୍ୟାଂଶୋଽର୍ଦ୍ଧ ପ୍ରହରକଃ ସ୍ପଷ୍ଟକର୍ମ ପ୍ରଦେଶକଃ ।

ଅର୍ଥାତ୍:—ଦିନମାନକୁ ରବିବାରାଦି କ୍ରମରେ ୬, ୫, ୪, ୩, ୨, ୧, ୦, ଦ୍ୱାରା ଗୁଣି, ୮ ରେ ଭାଗ ଦେଲେ ଗୁଳିକର ଆରମ୍ଭ ସମୟ ହେବ । ଏଥିରେ ଇଷ୍ଟ ଦଣ୍ଡର ଅଷ୍ଟମାଂଶ ମିଶାଇ ଦେଲେ ଗୁଳିକର ସ୍ପଷ୍ଟ ଇଷ୍ଟ କାଳ ହେବ । ରାତ୍ରିରେ ଗୁଳିକ ଲଗ୍ନ ସାଧିବାକୁ ହେଲେ, ରାତ୍ରିମାନକୁ ରବିବାରାଦି କ୍ରମରେ ୨, ୧, ୦, ୬, ୫, ୪, ୩, ରେ ଗୁଣି ୮ ରେ ହରଣ କରି,ହରଣ ଫଳରେ ରାତ୍ରିଦଣ୍ଡର (ରାତ୍ରିଗତ ଇଷ୍ଟର) ଅଷ୍ଟମାଂଶ ଯୋଗ କଲେ ରାତ୍ରି ଗୁଳିକର ସ୍ପଷ୍ଟ ଇଷ୍ଟ ସମୟ ହେବ । ଏଥିରେ ଦିନମାନକୁ ମିଶାଇଲେ ସୂର୍ଯ୍ୟୋଦୟାଦିକ ଇଷ୍ଟକାଳ ହୋଇଯିବ । ଉକ୍ତ ଇଷ୍ଟ ସମୟକୁ ଧରି ତାତ୍କାଳିକ ରବିଦ୍ୱାରା (ଉଦାହରଣ ଦୀପିକା ଦେଖ) ଯେଉଁ ଲଗ୍ନ ଆସିବ ସେହି ହେବ ଗୁଳିକ ଲଗ୍ନ । ଏହି ଗୁଳିକ ରାଶି ଯଦି କାରକାଂଶରେ ପଡେ ସେ ବିଷଦାତାଦି ହୁଏ ।

ଦ୍ରଷ୍ଟବ୍ୟ:—ସର୍ବାର୍ଥ ଚିନ୍ତାମଣି ପ୍ରଭୃତି ପୁସ୍ତକରେ ଏହି ଗୁଳିକ ସାଧନର ଯେଉଁ ନିୟମ କରାଯାଇଛି, ସେ ସବୁ ସ୍ଥୂଳ ବିଚାର । କିନ୍ତୁ ଗୁଳିକ ଇଷ୍ଟକାଳରୁ ତାତ୍କାଳିକ ଗୁଳିକ ଲଗ୍ନ ବାହାର କରିବାହିଁ ବାସ୍ତବିକ ଗୁଳିକଲଗ୍ନ ଏବଂ ସୂକ୍ଷ୍ମ ।

ଏହି ପ୍ରକାର ଯମଘଣ୍ଟ, ମୃତ୍ୟୁଯୋଗ, କାଳ ଓ ଅର୍ଦ୍ଧ-ଯାମ ଲଗ୍ନ ଗୁଡିକ ମଧ୍ୟ ଜଣାଯାଏ । ଯେହେତୁ ଏହା ଉପଗ୍ରହ ସାଧନରେ ବିଶେଷ ଦରକାର ହୁଏ ।

**ସୂତ୍ର:-ଚନ୍ଦ୍ରଦୃଷ୍ଟୌ ଚୌରାପହୃତଧନ-**
**ଶ୍ଚୌରୋ ବା । ୩୦ । ବୁଧମାତ୍ର ଦୃଷ୍ଟେ-**
**ବୃହଦ୍ବୀଜଃ । ୩୧ ।**

**ଅର୍ଥ:**—ଶୁକ୍ଳ କିମ୍ବା କାରକାଂଶକୁ ଚନ୍ଦ୍ର ଦେଖିଲେ ଚୋର-ଦ୍ୱାରା ଧନ ଅପହୃତ ହେବ ବା ନିଜେ ଚୋର ହେବ। ସଂକୁଳିକ କାରକାଂଶକୁ ବୁଧ ଦେଖିଲେ ବୃହତ୍ ବୃଷଣ ( ବୃହତ୍-ଅଣ୍ଡ-କୋଷ ) ହେବ।

**ସୂତ୍ର:-ତତ୍ର କେତୌ ପାପଦୃଷ୍ଟେ କର୍ଣ୍ଣଚ୍ଛେଦଃ**
**କର୍ଣ୍ଣରୋଗୋ ବା । ୩୨ ।**

**ଅର୍ଥ:**—କାରକାଂଶରେ କେତୁ ଯୁକ୍ତ ହୋଇ ପାପଗ୍ରହ ଦେଖୁଥିଲେ କର୍ଣ୍ଣଚ୍ଛେଦ ବା କର୍ଣ୍ଣରୋଗ ହୁଏ । ସେହିପରି ମଧ୍ୟ

"କାରକାଂଶେ କେତୁ ଯୁକ୍ତେ ପାପଗ୍ରହ ନିରୀକ୍ଷିତେ ।
ଶ୍ରୋତ୍ର ଚ୍ଛେଦୋ ଭବେନ୍ନୂନଂ କର୍ଣ୍ଣରୋଗୋଽଥବା ଭବେତ୍" ।

**ସୂତ୍ର:-ଶୁକ୍ରଦୃଷ୍ଟେ ଦୀକ୍ଷିତଃ । ୩୩ । ବୁଧଶନିଦୃଷ୍ଟେ**
**ନିର୍ବୀର୍ଯଃ । ୩୪ । ବୁଧ ଶୁକ୍ରଦୃଷ୍ଟେ ପୌନଃ**
**ପୁନିକୋ ଦାସୀପୁତ୍ରୋ ବା । ୩୫ । ଶନିଦୃଷ୍ଟେ**
**ତପସ୍ୱୀ ପ୍ରେଷ୍ୟୋ ବା । ୩୬ । ଶନିମାତ୍ର**
**ଦୃଷ୍ଟେ ସନ୍ନ୍ୟାସାଭାସଃ । ୩୭ ।**

ଅର୍ଥ:—କାରକାଂଶରେ କେତୁ ଥାଇ ଶୁକ୍ର ଦେଖୁଥିଲେ ଯାଜ୍ଞିକ ହୁଏ ।

କେତୁଯୁକ୍ତ କାରକାଂଶକୁ ବୁଧ, ଶନି ଦେଖିଲେ ଜାତକ ଦୁର୍ବଳ ହୁଏ ।

କେତୁଯୁକ୍ତ କାରକାଂଶକୁ ବୁଧ ଶୁକ୍ର ଦେଖୁଥିଲେ ପୁନଃ ପୁନଃ ବକ୍ତା, (କହିଲା ସମୟରେ ଅଟକିଯାଇ ପୁଣି ସେହି ବାକ୍ୟ ଉଚ୍ଚାରଣ କରିବା ) ବା ଦାସୀ ପୁତ୍ରହୁଏ ।

କେତୁସହ କାରକାଂଶକୁ ଶନି ଦେଖୁଥିଲେ ତପସ୍ୱୀ ବା ଭୃତ୍ୟ ହୁଏ ।

ସେହି କାରକାଂଶକୁ କେବଳ ଶନି ଦେଖିଲେ କପଟ ସନ୍ୟାସୀ ହୁଏ ।

## ସୂତ୍ର:-ତତ୍ର ରବିଶୁକ୍ରଦୃଷ୍ଟେ ରାଜପ୍ରେଷ୍ୟଃ । ୩୮ ।

ପୁନଶ୍ଚ:—"କାରକାଂଶେ ଯଦାରବିପ୍ରଭୃଗୁ ଭାସ୍କର ବୀକ୍ଷିତେ ।

ରାଜସେବ୍ୟୋ ଭବେଦ୍‌ବାଳଃ ।" ଇତି

ଅର୍ଥ:—କେବଳ କାରକାଂଶକୁ ରବି ଓ ଶୁକ୍ର ଦେଖିଲେ ରାଜ-ଭୃତ୍ୟ ହୁଏ ।

### କାରକାଂଶ-ଦଶମ ଫଳ

## ସୂତ୍ର:-ରିଷ୍ଫେ ବୁଧେ ବୁଧଦୃଷ୍ଟେ ବା
## ମନ୍ଦବତ୍ । ୩୯ । ଶୁଭଦୃଷ୍ଟେ ସ୍ଥେୟଃ । ୪୦ ।
## ରବୌ ଗୁରୁମାତ୍ର ଦୃଷ୍ଟେ ଗୋପାଳଃ । ୪୧ ।

ଅର୍ଥ:— କାରକାଂଶର ( ହ: ଫେ ) ଦଶମରେ ବୁଧଥିଲେ ବା ବୁଧ-
ଦେଖୁଥିଲେ ପ୍ରସିଦ୍ଧ କର୍ମଦ୍ୱାରା ଜୀବିକା ନିର୍ବାହ କରେ ।
କାରକାଂଶ ଦଶମକୁ ଶୁଭଗ୍ରହ ଦେଖିଲେ ସ୍ଥିର ( ମଠୁଆ )
ହୁଏ ।
କାରକାଂଶ ଦଶମରେ ରବିଯୁକ୍ତ ହୋଇ ବୃହସ୍ପତି
ଦେଖିଲେ ବହୁସଂଖ୍ୟକ ଗାଈ ଗୋରୁ ପାଳନ କରେ ।

କାରକାଂଶ--ଚତୁର୍ଥ ଫଳ

**ସୂତ୍ର:-ଦାରେ ଚନ୍ଦ୍ରଶୁକ୍ରଦୃଗ୍ ଯୋଗାତ୍**

**ପ୍ରାସାଦଃ । ୪୨ । ଉଚ୍ଚ ଗ୍ରହେଽପି । ୪୩ ।**

**ରାହୁ ଶନିଭ୍ୟାଂ ଶିଳାଗୃହମ୍ । ୪୪ ।**

**କୁଜକେତୁଭ୍ୟାମୈଷ୍ଟିକମ୍ । ୪୫ ।**

**ଗୁରୁଣା ଦାରବମ୍ । ୪୬ ।**

**ତାର୍ଣ୍ଣଂରବିଣା । ୪୭ ।**

ଅର୍ଥ:— କାରକାଂଶର ( ଦାର ) ଚତୁର୍ଥରେ ଚନ୍ଦ୍ର ଓ ଶୁକ୍ରଥିଲେ ବା
ଦେଖୁଥିଲେ ପ୍ରାସାଦ (ବୃହତ୍ ଅଟ୍ଟାଳିକା ) ନିର୍ମାଣ କରେ ।
ସେଠାରେ କୌଣସିଗ୍ରହ ଉଚ୍ଚସ୍ଥ ହୋଇଥିଲେ ସୁଦ୍ଧା
ପ୍ରାସାଦବାନ୍ ହୁଏ ।
ଶନି ରାହୁଯୁକ୍ତ ହୋଇଥିଲେ ପଥରନିର୍ମିତ ଗୃହନିର୍ମାଣ କାରୀ
ହୁଏ । ମଙ୍ଗଳ ଓ କେତୁ ଯୋଗୁଁ ଇଟା, ବୃହସ୍ପତି ହେତୁ
କାଷ୍ଠ ଏବଂ ରବି ରହିଲେ ଛଣଘର ବାସୀ ହୁଏ ।

## କାରକାଂଶ-ନବମ ଫଳ

ସୂତ୍ରଃ-ସମେ ଶୁଭଦୃଗ୍ ଯୋଗାର୍ଦ୍ଧିନଃସତ୍ୟ

ସତ୍ୟବାଦୀ ଗୁରୁଭକ୍ତଶ୍ଚ । ୪୮ । ଅନ୍ୟଥା
ପାପୈଃ । ୪୯ । ଶନି ରାହୁଭ୍ୟାଂ
ଗୁରୁଦ୍ରୋହଃ । ୫୦ । ଗୁରୁ ରବିଭ୍ୟାଂ
ଗୁରାବବିଶ୍ୱାସଃ । ୫୧ ।

ଅର୍ଥ:—କାରକାଂଶର ( ସମେ ) ନବମରେ ଶୁଭଗ୍ରହଯୁକ୍ତ ହୋଇଥିଲେ ବା ଦେଖୁଥିଲେ ଜାତକ ଧର୍ମକର୍ତ୍ତା ଓ ସତ୍ୟବାଦୀ ହୁଏ । ପାପ ଗ୍ରହର ଯୋଗ ବା ଦୃଷ୍ଟିଦ୍ୱାରା ପାପାଚରଣ କରେ । ଶନି ଓ ରାହୁ ନବମସ୍ଥ ହେଲେ ଗୁରୁଦ୍ରୋହୀ ହୁଏ । ନବମସ୍ଥ ରବି, ବୃହସ୍ପତି ଦ୍ୱାରା ଗୁରୁଙ୍କ ବିଶ୍ୱାସର ପାତ୍ରହୁଏ ନାହିଁ ।

## ସ୍ତ୍ରୈଣାଦି ଯୋଗ

ସୂତ୍ରଃ-ତତ୍ର ଭୃଗ୍ୱଙ୍ଗାରକବର୍ଗେ

ପାରଦାରିକଃ । ୫୨ । ଦୃଗ୍‌ଯୋଗାଭ୍ୟା-
ମାଧିକାଭ୍ୟାମାମରଣମ୍ । ୫୩ । କେତୁନା
ପ୍ରତିବନ୍ଧଃ । ୫୪ । ଗୁରୁଣା ସ୍ତ୍ରୈଣଃ । ୫୫ ।
ରାହୁଣାଽର୍ଥନିବୃତ୍ତିଃ । ୫୬ ।

ଅର୍ଥ:—କାରକାଂଶରେ ଶୁକ୍ର ମଙ୍ଗଳର ବର୍ଗ ( କ୍ଷେତ୍ରାଦି ) ହେଲେ ପର ସ୍ତ୍ରୀ ଆସକ୍ତ ହୁଏ । କିନ୍ତୁ ବର୍ଗ କାରକାଂଶକୁ ଯଦି ଏଦୁହେଁ ଦେଖନ୍ତି ବା ଯୁକ୍ତ ହୁଅନ୍ତି ତେବେ ମୃତ୍ୟୁପର୍ଯ୍ୟନ୍ତ ପରସ୍ତ୍ରୀଆସକ୍ତ ହୋଇଥାଏ । କିନ୍ତୁ ସେଠାକୁ କେତୁର ଦୃଷ୍ଟିଥିଲେ ବା ସେଥିରେ କେତୁ ଯୁକ୍ତ ହୋଇଥିଲେ ସ୍ତ୍ରୈଣ ସ୍ୱଭାବ ଅଳ୍ପକାଳ ରହେ । କାରକାଂଶ ବୃହସ୍ପତିର ବର୍ଗ ହୋଇ ବୃହସ୍ପତି ଯୁକ୍ତହେଲେ ବା ଦେଖିଲେ ସ୍ତ୍ରୈଣ ( ସ୍ତ୍ରୀ-ପ୍ରିୟ ) ହୁଏ । କାରକାଂଶ ଶୁକ୍ର ମଙ୍ଗଳର ବର୍ଗ ହୋଇ ରାହୁ ଯୋଗ ବା ଦୃଷ୍ଟି ହେଲେ ପର-ସ୍ତ୍ରୀ ନିମିତ୍ତ ଧନ ନାଶହୁଏ ।

## କାରକାଂଶ-ସପ୍ତମ ଫଳ

ସୂତ୍ର:–ଲାଭେଚନ୍ଦ୍ର ଗୁରୁଭ୍ୟାଂ ସୁନ୍ଦରୀ । ୫୭ ।
ରାହୁଣା ବିଧବା । ୫୮ ।
ଶନିନାବୟୋଽଧିକା ରୋଗିଣୀ-
ତପସ୍ୱିନୀ ବା । ୫୯ । କୁଜେନ
ବିକଳାଙ୍ଗୀ । ୬୦ । ରବିଣା ସ୍ୱ କୁଳେ
ଗୁପ୍ତା ଚ । ୬୧ । ବୁଧେନ କଳାବତୀ ।୬୨।

ଅର୍ଥ:—କାରକାଂଶର ( ଲାଭ ) ସପ୍ତମରେ ଚନ୍ଦ୍ର ବୃହସ୍ପତି ମିଶିକରି ଥିଲେ ସୁନ୍ଦରୀ ସ୍ତ୍ରୀ ଲାଭ ହୁଏ । କାରକାଂଶ ସପ୍ତମରେ ରାହୁଥିଲେ ବିଧବା ସହ ସଂସର୍ଗ କରେ । କାରକାଂଶ

ସପ୍ତମରେ ଶନି ଥିଲେ ତାର ସ୍ତ୍ରୀ ବୟୋଧିକା ବା ରୋଗିଣୀ ଏବଂ ତପସ୍ୱିନୀ ମଧ୍ୟ ହୁଏ ।

କାରକାଂଶ ସପ୍ତମସ୍ଥ ମଙ୍ଗଳ ଯୋଗୁଁ ସ୍ତ୍ରୀ ବିକଳାଙ୍ଗୀ ( କୌଣସି ଅଙ୍ଗହୀନା ) ହୁଏ । ରବି କାରକାଂଶ ସମ ସପ୍ତମରେ ଥିଲେ ନିଜବଂଶ ସ୍ତ୍ରୀ ସହ ପରିଣୟ କରେ ବା ସ୍ତ୍ରୀ ବିକଳାଙ୍ଗୀ ହୁଏ । କାରକାଂଶ ସପ୍ତମରେ ବୁଧ ଥିଲେ ଗୀତ, ବାଦ୍ୟାଦି କଳାପ୍ରବୀଣା ସ୍ତ୍ରୀ ଭୋଗ କରେ ।

**ସୂତ୍ର:-ଚୂପେ ଚନ୍ଦ୍ରେଣାନାବୃତ୍ତେ ଦେଶେ । ୭୩ ।**

ଅର୍ଥ:—କାରକାଂଶର ( ଚୂପ ) ଚତୁର୍ଥରେ ଚନ୍ଦ୍ର ଥିଲେ ଅନାବୃତ ସ୍ଥାନରେ ( ବିନା ପର୍ଦ୍ଦାରେ ) ସ୍ତ୍ରୀ-ସହବାସକରେ ।

## କାରକାଂଶ—ତୃତୀୟ ଫଳ

**ସୂତ୍ର:-କର୍ମଣି ପାପେ ଶୂରଃ । ୭୪ ।**

**ଶୁଭେକାତରଃ । ୭୫ ।**

ଅର୍ଥ:—କାରକାଂଶରୁ ( କର୍ମ ) ତୃତୀୟରେ ପାପଗ୍ରହଥିଲେ ଶୂର ( ବୀର ପ୍ରକୃତିକ ) ହୁଏ । କିନ୍ତୁ ଶୁଭ ଗ୍ରହଥିଲେ ଭୟାଳୁ ହୁଏ ।

**ସୂତ୍ର:-ମୃତ୍ୟୁଚିନ୍ତ୍ୟୋଃ ପାପେ କର୍ଷକଃ । ୭୬ ।**

**ସମେଗୁରୌ ବିଶେଷେଣ । ୭୭ ।**

ଅର୍ଥ:—କାରକାଂଶର ( ମୃତ୍ୟୁ ) ତୃତୀୟ ଓ ( ଚିନ୍ତ୍ୟ ) ଷଷ୍ଠରେ ପାପଗ୍ରହଥିଲେ କୃଷି କାର୍ଯ୍ୟକରେ । କିନ୍ତୁ ( ସମେ ) ନବମରେ ବୃହସ୍ପତି ଥିଲେ ବିଶେଷ ଭାବେ କୃଷିକାର୍ଯ୍ୟକରେ ।

ସୂତ୍ର:–ଉଚ୍ଚେ ଶୁଭେ ଶୁଭଲୋକଃ । ୭୮ ।

କେତୌ କୈବଲ୍ୟମ୍ । ୬୯ ।

କ୍ରିୟଚାପୟୋ ର୍ବିଶେଷେଣ । ୭୦ ।

ପାପୈରନ୍ୟଥା । ୭୧ ।

ଅର୍ଥ:—କାରକାଂଶରୁ ( ଉଚ୍ଚ ) ଦ୍ୱାଦଶରେ ଶୁଭଗ୍ରହଥିଲେ ଶୁଭ-ଲୋକ ପ୍ରାପ୍ତି ହୁଏ । କାରକାଂଶର ଦ୍ୱାଦଶସ୍ଥ କେତୁ ମୋକ୍ଷ ଲାଭ କରାଏ । କାରକାଂଶରୁ ଦ୍ୱାଦଶ ମୀନ ବା କର୍କଟ ରାଶି ହେଲେ ବିଶେଷ ଭାବେ ମୋକ୍ଷ ପ୍ରାପ୍ତି ହୁଏ । କିନ୍ତୁ ଦ୍ୱାଦଶରେ ପାପଗ୍ରହଯୁକ୍ତ ହେଲେ ମୋକ୍ଷପ୍ରାପ୍ତି ହୁଏ ନାହିଁ ।

## ଦେବଭକ୍ତି ବିଚାର

ସୂତ୍ର:—ରବିକେତୁଭ୍ୟାଂ ଶିବେଭକ୍ତଃ । ୭୨ ।

ଚନ୍ଦ୍ରେଣ ଗୌର୍ଯ୍ୟାମ୍ । ୭୩ ।

ଶୁକ୍ରେଣ ଲକ୍ଷ୍ମ୍ୟାମ୍ । ୭୪ ।

କୁଜେନ ସ୍କନ୍ଦେ । ୭୫ ।

ବୁଧଶନିଭ୍ୟାଂ ବିଷ୍ଣୌ । ୭୬ ।

ଗୁରୁଣା ସାମ୍ବଶିବେ । ୭୭ ।

ରାହୁଣା ତାମସ୍ୟାଂ ଦୁର୍ଗାୟାଂ ଚ । ୭୮ ।

କେତୁନା ଗଣେଶେ ସ୍କନ୍ଦେ ଚ । ୭୯ ।

ଅର୍ଥ:—କାରକାଂଶର ଦ୍ୱାଦଶସ୍ଥ ରବି ଓ କେତୁ ଦ୍ୱାରା ବିଶେଷ-ଭାବେ ଶିବଭକ୍ତ ଜାତ ହୁଏ । ସେହିପରି ଚନ୍ଦ୍ର ଦ୍ୱାରା ପାର୍ବତୀଙ୍କଠାରେ, ଶୁକ୍ରଙ୍କ ଯୋଗୁଁ ଲକ୍ଷ୍ମୀଙ୍କଠାରେ, ମଙ୍ଗଳ-ଥିଲେ କାର୍ତ୍ତିକେୟଙ୍କ ଠାରେ,ବୁଧ ଓ ଶନି ଥିଲେ ବିଷ୍ଣୁଙ୍କ ଠାରେ,ବୃହସ୍ପତିଙ୍କ ହେତୁ ଶାମ୍ବ ଓ ଶିବଙ୍କଠାରେ, ରାହୁ-ଥିଲେ ତାମସୀ ଦେବତାମାନଙ୍କ ଠାରେ ବା ଦୁର୍ଗାଙ୍କ-ଠାରେ ଏବଂ କେତୁ ଦ୍ୱାଦଶସ୍ଥ ହେଲେ ଗଣେଶ ଓ କାର୍ତ୍ତିକେୟଙ୍କଠାରେ ଭକ୍ତ ରହେ ।

**ସୂତ୍ର:-ପାପକ୍ଷେ ମନ୍ଦେ କ୍ଷୁଦ୍ରଦେବତାସୁ । ୮୦ ।**
**ଶୁକ୍ରେଚ । ୮୧ । ଅମାତ୍ୟ**
**ଦାସେଚୈବମ୍ । ୮୨ ।**

ଅର୍ଥ:—କାରକାଂଶର ଦ୍ୱାଦଶ ପାପଗ୍ରହର କ୍ଷେତ୍ରହୋଇ ସେଥିରେ ଶନି ଥିଲେ କ୍ଷୁଦ୍ର ଦେବତାମାନଙ୍କଠାରେ (ଯକ୍ଷିଣୀ-କର୍ଣ୍ଣପିଶାଚୀ ପ୍ରଭୃତି) ଭକ୍ତହୁଏ । ଶୁକ୍ର ଥିଲେ ମଧ୍ୟ ସେହି-ପରି କ୍ଷୁଦ୍ର ଦେବତା ଆରାଧନା କରେ । ଅମାତ୍ୟ କାର-କର ଷଷ୍ଠଭାବରୁ ମଧ୍ୟ ଏହିପରି ଭକ୍ତି ବିଚାର କରାଯାଏ ।

**ସୂତ୍ର:-ତ୍ରିକୋଣେ ପାପଦ୍ୱୟେ ମାନ୍ତ୍ରିକଃ । ୮୩ ।**
**ପାପଦୃଷ୍ଟେ ନିଗ୍ରାହକଃ । ୮୪ ।**
**ଶୁଭଦୃଷ୍ଟେଽନୁଗ୍ରାହକଃ । ୮୫ ।**

ଅର୍ଥ:—କାରକାଂଶର ଲଗ୍ନର ତ୍ରିକୋଣରେ (୯, ୫ ରେ) ପାପ ଗ୍ରହ ଦୁଇଟି ଥିଲେ ମନ୍ତ୍ରଶାସ୍ତ୍ରଜ୍ଞ ହୁଏ । ପାପଦ୍ୱୟଯୁକ୍ତ ସେହି ତ୍ରିକୋଣକୁ ପାପଗ୍ରହ ଦେଖୁଥିଲେ ନିର୍ଦ୍ଦୟହୁଏ । କିନ୍ତୁ ପାପଯୁକ୍ତ ହୋଇ ଶୁଭଗ୍ରହ ଦୃଷ୍ଟି ଥିଲେ ଲୋକମାନଙ୍କ ଅନୁଗ୍ରହର ପାତ୍ର ହୁଏ ।

**ସୂତ୍ର:-ଶୁକ୍ରେନ୍ଦୌ ଶୁକ୍ରଦୃଷ୍ଟେ ରସବାଦୀ । ୮୬ ।**

**ବୁଧଦୃଷ୍ଟେ ଭିଷକ୍ । ୮୭ ।**

ଅର୍ଥ: — କାରକାଂଶ ଲଗ୍ନସ୍ଥ ଚନ୍ଦ୍ରକୁ ଶୁକ୍ର ଦେଖିଲେ ରସାୟନ-ଶାସ୍ତ୍ରଜ୍ଞ ହୁଏ । ସେହିପରି କାରକାଂଶ ଲଗ୍ନସ୍ଥ ଚନ୍ଦ୍ରକୁ ବୁଧ ଦେଖୁଥିଲେ ବୈଦ୍ୟଶାସ୍ତ୍ରରେ ପ୍ରବୀଣ (ବୈଦ୍ୟ) ହୁଏ ।

## କୁଷ୍ଠାଦ୍ୟୁଦ୍ବେଗ ବିଚାର

**ସୂତ୍ର:-ଚତୁର୍ଥେ ଚନ୍ଦ୍ରେ ଶୁକ୍ରଦୃଷ୍ଟେ ପାଣ୍ଡୁଶ୍ୱିତ୍ରୀ । ୮୮ ।**

**କୁଜଦୃଷ୍ଟେ ମହାରୋଗଃ । ୮୯ ।**

**କେତୁ ଦୃଷ୍ଟେ ନୀଳକୁଷ୍ଠମ୍ । ୯୦ ।**

ଅର୍ଥ:---କାରକାଂଶ ଲଗ୍ନର (ସ୍ୱପ) ଚତୁର୍ଥସ୍ଥ ଚନ୍ଦ୍ରକୁ ଶୁକ୍ର ଦେଖୁଥିଲେ ପାଣ୍ଡୁଶ୍ୱେତ ବା ଶ୍ୱେତକୁଷ୍ଠ ହୁଏ । ସେହି-ପରି କାରକାଂଶର ଚନ୍ଦ୍ରଯୁକ୍ତ ଚତୁର୍ଥକୁ ମଙ୍ଗଳ ଦେଖିଲେ ମହାକୁଷ୍ଠ ଏବଂ କେତୁର ଦୃଷ୍ଟି ଥିଲେ ନୀଳକୁଷ୍ଠ ହୁଏ ।

ସୂତ୍ର:-ତତ୍ରମୃତଗୌ ବା କୁଜରାହୁଭ୍ୟାଂ କ୍ଷୟ୍ୟଃ । ୯୧ ।
ଚନ୍ଦ୍ରଦୃଷ୍ଟୌ ନିଶ୍ଚୟେନ । ୯୨ ।
କୁଜେନ ପିଟକାଦ୍ୟଃ । ୯୩ ।
କେତୁନା ଗ୍ରହଣୀ ଜଲରୋଗୋ ବା । ୯୪ ।
ରାହୁ-ଗୁଳିକାଭ୍ୟାଂ କ୍ଷୁଦ୍ରବିଷାଣି । ୯୫ ।

ଅର୍ଥ:---କାରକାଂଶ ଲଗ୍ନର (ତତ୍ର) ଚତୁର୍ଥ ବା (ମୃତ) ପଞ୍ଚମରେ ମଙ୍ଗଳ ରାହୁ ମିଶିକରଥିଲେ କ୍ଷୟରୋଗ ହୁଏ । ଏହି ଚତୁର୍ଥ ବା ପଞ୍ଚମସ୍ଥ ମଙ୍ଗଳ ଓ ରାହୁକୁ ଚନ୍ଦ୍ର ଦେଖୁଥିଲେ ନିଶ୍ଚୟରେ କ୍ଷୟରୋଗ ହେବ । କାରକାଂଶ ଚତୁର୍ଥ ବା ପଞ୍ଚମରେ ମଙ୍ଗଳ ଥିଲେ ପିଠକାଦ (ଜଳୋଦରାଦ) ରୋଗହୁଏ । କାରକାଂଶର ଚତୁର୍ଥ ବା ପଞ୍ଚମସ୍ଥ କେତୁ-ଦ୍ୱାରା ଗ୍ରହଣୀ ବା ଜଳୋଦର ରୋଗ ଜାତହୁଏ । କାର-କାଂଶ ଲଗ୍ନର ଚତୁର୍ଥ ବା ପଞ୍ଚମରେ ରାହୁ ଓ ଗୁଳିକଲଗ୍ନ ରହିଲେ ବୃଶ୍ଚିକାଦ (କଙ୍କଡାବିଛା ପ୍ରଭୃତି) କ୍ଷୁଦ୍ର ବିଷ-ଦ୍ୱାରା କଷ୍ଟଭୋଗ ହୁଏ ।

ଶସ୍ତ୍ରଙ୍କ ଯୋଗ

ସୂତ୍ର:-ତତ୍ରଶନୌ ଧନୁଷ୍କଃ । ୯୬ । କେତୁନା
ଘଟିକାଯନ୍ତ୍ରୀ । ୯୭ । ବୁଧେନ ପରମହଂସୋ
ଲଗୁଡ଼ୀ ବା । ୯୮ । ରାହୁଣା ଲୋହଯନ୍ତ୍ରୀ । ୯୯ ।

ରିର୍ବାଣା ଖଡ଼୍ଗୀ । ୧୦୦ । କୁଜେନ

କୁନ୍ତୀ । ୧୦୧ ।

ଅର୍ଥ:—କାରକାଂଶ ଲଗର ଚତୁର୍ଥରେ ଶନିଥିଲେ ଧନୁର୍ବିଦ୍ୟାରେ ନିପୁଣ ହୁଏ । କେତୁ ଦ୍ୱାରା ଘଣ୍ଟୀ ଯନ୍ତ୍ରାଦ ନିର୍ମାଣରେ କୁଶଳ । କାରକାଂଶର ଚତୁର୍ଥସ୍ଥ ବୁଧ ପରମହଂସ ବା ସନ୍ୟାସୀ କରାଏ । ରାହୁଦ୍ୱାରା ଲୌହ ଯନ୍ତ୍ରଜ୍ଞ ହୁଏ । ଚତୁର୍ଥସ୍ଥ ରବ ଖଡ଼୍ଗଧାରୀ କରାଏ ଏବଂ ମଙ୍ଗଳ କାରକାଂଶର ଚତୁର୍ଥରେ ଥିଲେ ଭାଲ ଧାରଣ କରେ ।

ଶାସ୍ତ୍ରଜ୍ଞ ଯୋଗ

ସୂତ୍ର:-ମାତା ପିତ୍ରୋଶ୍ଚନ୍ଦ୍ର ଗୁରୁଭ୍ୟାଂ

ଗ୍ରନ୍ଥକୃତ୍ । ୧୦୨ । ଶୁକ୍ରେଣ

କାଞ୍ଚନ୍ଦୂନମ୍ । ୧୦୩ । ବୁଧେନ

ତତୋଽପି । ୧୦୪ । ଶୁକ୍ରେଣ କବିର୍ବାଗ୍ମୀ

କାବ୍ୟଜ୍ଞଶ୍ଚ । ୧୦୫ ।

ଗୁରୁଣା ସର୍ବବିଦ୍ ଗ୍ରାନ୍ଥିକଶ୍ଚ । ୧୦୬ ।

ନବାଗ୍ମୀ । ୧୦୭ । ବିଶେଷ୍ୟ ବୈୟାକରଣୋ

ବେଦ ବେଦାଙ୍ଗବିଚ୍ଚ । ୧୦୮ ।

ସଭାଜଡ଼ଶନୈିନା ୧୦୯ । ବୁଧେନ

ମୀମାଂସକଃ । ୧୧୦ ।

**କୁଜେନ ନୈୟାୟିକଃ । ୧୧୧ । ଚନ୍ଦ୍ରେଣ ସାଂଖ୍ୟଯୋଗଜ୍ଞଃ ସାହିତ୍ୟଜ୍ଞୋ- ଗାୟକଶ୍ଚ । ୧୧୨ । ରବିଣା ବେଦାନ୍ତଜ୍ଞୋ ଗୀତଜ୍ଞଶ୍ଚ । ୧୧୩ । କେତୁନା ଗଣିତଜ୍ଞଃ । ୧୧୪ । ଗୁରୁସମ୍ବନ୍ଧେନ ସମ୍ପ୍ରଦାୟସିଦ୍ଧିଃ । ୧୧୫ ।**

ଅର୍ଥ:— କାରକାଂଶ ଲଗ୍ନରେ ବା ଏହାର ପଞ୍ଚମରେ ଚନ୍ଦ୍ର, ବୃହସ୍ପତି ଥିଲେ ଗ୍ରନ୍ଥକର୍ତ୍ତା ହେବ । କିନ୍ତୁ ଚନ୍ଦ୍ର ଓ ଶୁକ୍ର ଥିଲେ ସାଧାରଣ ଗ୍ରନ୍ଥ କର୍ତ୍ତା ହେବ । ବୁଧ, ଚନ୍ଦ୍ର ଥିଲେ ତାହାଠାରୁ (ଦ୍ୱିତୀୟ ଯୋଗଠାରୁ) ଅଳ୍ପ ଗ୍ରନ୍ଥକାରୀ ହୁଏ । ଶୁକ୍ର ଥିଲେ କବି ବାଗ୍ମୀ ଓ କାବ୍ୟଶାସ୍ତ୍ରଜ୍ଞ ହୁଏ । କେବଳ ବୃହସ୍ପତି କାରକାଂଶ ବା କାରକାଂଶର ପଞ୍ଚମରେ ଥିଲେ ସର୍ବଜ୍ଞ, ଗ୍ରନ୍ଥକର୍ତ୍ତା, ବ୍ୟାକରଣ ପ୍ରଭୃତି ବେଦ ବେଦାଙ୍ଗ ପ୍ରବୀଣ କିନ୍ତୁ ବାକ୍‌ପଟୁତାର ଅଭାବହୁଏ । ଶନି ଉକ୍ତ ସ୍ଥାନରେ ଥିଲେ ସଭାରେ ଜଡ଼ ହୁଏ । ବୁଧ ଥିଲେ ମୀମାଂସକ । ମଙ୍ଗଳ ଯୋଗୁଁ ନ୍ୟାୟଶାସ୍ତ୍ରଜ୍ଞ ହୁଏ । କାରକାଂଶ ବା କାରକାଂଶର ପଞ୍ଚମସ୍ଥ ଚନ୍ଦ୍ର ସାଂଖ୍ୟଯୋଗ, ସାହିତ୍ୟ ଓ ଗାନବିଦ୍ୟାରେ ପ୍ରବୀଣ କରାଏ । ରବିଦ୍ୱାରା ବେଦାନ୍ତଜ୍ଞ ହୁଏ । କେତୁ ଥିଲେ ଗାଣିତିକ ହୁଏ । କିନ୍ତୁ ଏହି ଯୋଗମାନଙ୍କରେ ବୃହସ୍ପତିର ବର୍ଗ, ଯୋଗ ବା ଦୃଷ୍ଟି

ପ୍ରଭୃତି ସମ୍ବନ୍ଧ ଥିଲେ ସେହି ବିଷୟରେ ପୂର୍ଣ୍ଣଜ୍ଞାନ ଲଭ-ହୁଏ ।

**ସୂତ୍ରଃ-ଭାଗ୍ୟେଚୈବମ୍ । ୧୧୬ । ସଦାଚୈବ ମିତ୍ୟେକେ । ୧୧୭ ।**

ଅର୍ଥ:—କାରକାଂଶରେ ବା ତାର ପଞ୍ଚମରେ ଯେପରି ବିଦ୍ୟା ବିଚାର କରାଯାଇଛି, ସେହିପରି କାରକାଂଶର (ଭାଗ୍ୟ) ଦ୍ୱିତୀୟରେ ମଧ୍ୟ ବିଚାର କରିବା ଉଚିତ । ଏବଂ କାରକାଂଶର (ସଦା) ତୃତୀୟରେ ମଧ୍ୟ ବିଦ୍ୟାବିଚାର କରାଯିବ ବୋଲି କାହାର କାହାର ମତ ।

**ସୂତ୍ରଃ-ଭାଗ୍ୟେ କେତୌ ପାପଦୃଷ୍ଟେ-ସ୍ତବ୍ଧବାକ୍ । ୧୧୮ ।**

ଅର୍ଥ:--କାରକାଂଶର ଦ୍ୱିତୀୟରେ କେତୁଥିଲେ ଶୀଘ୍ର ଉତ୍ତର ଦେଇ-ପାରେ ନାହିଁ ।

କେମଦ୍ରୁମ ଯୋଗ

**ସୂତ୍ରଃ-ସ୍ୱପିତୃପଦାଦ୍ଭାଗ୍ୟ ରୋଗୟୋଃ ପାପସାମ୍ୟେକେମଦ୍ରୁମଃ । ୧୧୯ । ଚନ୍ଦ୍ରଦୃଷ୍ଟୌ ବିଶେଷେଣ । ୧୨୦ । ସର୍ବେଷାଂ ଚୈବ ପାକେ । ୧୨୧ ।**

ଅର୍ଥ:—ଆରୂଢ଼ଲଗ୍ନଠାରୁ ବା ଜନ୍ମଲଗ୍ନ ଓ ପଦଲଗ୍ନଠାରୁ (ଭାଗ୍ୟ) ଦଶମ ଓ (ରୋଗ) ଅଷ୍ଟମରେ ସମାନ ପାପଗ୍ରହ-ଥିଲେ "କେମଦ୍ରୁମ" ଯୋଗ ହୁଏ । ଚନ୍ଦ୍ର ଉକ୍ତ ସ୍ଥାନକୁ ଦେଖୁଥିଲେ ବିଶେଷ ଭାବେ 'କେମଦ୍ରୁମ' ଯୋଗ ହୁଏ । ଏହିପରି ମଧ୍ୟ ଯଥା:---

"ଆରୂଢ଼ାଜ୍ଜନ୍ମଲଗ୍ନାଦ୍ ବା ପାପୌସ୍ତ୍ରୀ ହ୍ୟାନ୍ତଗୌ ଯଦା ।
କେବଲୌ ସଗ୍ରହତ୍ୱେଽପି ସମଙ୍ଖ୍ୟୌ ଶୁଭାଶୁଭୌ ।
ଚନ୍ଦ୍ରଦୃଷ୍ଟୌ ବିଶେଷେଣ ଯୋଗଃକେମଦ୍ରୁମୋମତଃ ଇତି ।"

ଉକ୍ତ ଶୁଭାଶୁଭାଦ ଫଳସବୁ ଦଶାଭୋଗ ସମୟରେହିଁ-- ଲାଭହୁଏ ।

—ঃ✵ঃ—

# ଅଥ ପ୍ରଥମାଧ୍ୟାୟସ୍ୟ ତୃତୀୟ ପାଦଃ

**ସୂତ୍ର:-ଅଥ ପଦମ୍ । ୧ ।**

ଅର୍ଥ:—ଏହା ପରେ "ଯାବଦୀଶାଶ୍ରୟଂ ପଦମୃକ୍ଷାଣମ୍" ଏହି ସୂତ୍ର-ଦ୍ୱାରା ସିଦ୍ଧ ହୋଇଥିବା 'ପଦ' (ଆରୂଢ଼)କୁ ଅବଲମ୍ବନ କରି ଫଳ କୁହାଯାଉଅଛି ।

**ସୂତ୍ର:-ବ୍ୟୟେ ସଗ୍ରହେ ଗ୍ରହଦୃଷ୍ଟେ ଶ୍ରୀମନ୍ତଃ । ୨ ।**
**ଶୁଭୈର୍ନ୍ୟାୟ୍ୟେଯାଲ୍ଲାଭଃ । ୩ ।**

## ପାପୈରମାର୍ଗେଣ । ୪ ।

## ଉଚ୍ଚାଦଭିର୍ବିଶେଷାତ୍ । ୫ ।

ଅର୍ଥ:—ପଦର ( ଆରୂଢ ଲଗ୍ନର ), ( ବ୍ୟୟ ) ଏକାଦଶରେ ଶୁଭ ବା ପାପଗ୍ରହର ଯୋଗ ବା ଦୃଷ୍ଟି ହେଉଥିଲେ ମନୁଷ୍ୟ ଶ୍ରୀମାନ ହୁଏ । ସେହିପରି ପଦଲଗ୍ନର ଏକାଦଶରେ ଶୁଭ-ଗ୍ରହଯୁକ୍ତ ବା ଦୃଷ୍ଟ ହେଉଥିଲେ ନ୍ୟାୟମାର୍ଗରେ ଧନଲାଭ ହୁଏ । ପାପଗ୍ରହ ଯୁକ୍ତ ହୋଇଥିଲେ ବା ଦେଖୁଥିଲେ କୁତ୍ସିତ ବୃତ୍ତିଦ୍ୱାରା ଧନ ଲଭନ୍ତରେ । ପଦଲଗ୍ନର ଏକା-ଦଶସ୍ଥଗ୍ରହ ଉଚ୍ଚ, ସ୍ୱଗୃହି ମୂଳତ୍ରିକୋଣ ପ୍ରଭୃତିରେ ଥିଲେ ବିଶେଷ ଲାଭବାନ୍ ହୁଏ ।

## ସୂତ୍ର:-ନୀଚେ ଗ୍ରହଦୃଗ୍ ଯୋଗାଦ୍-

## ବ୍ୟୟାଧିକ୍ୟମ୍ । ୬ ।

ଅର୍ଥ:—ଲଗ୍ନପଦର ( ନୀଚ ) ଦ୍ୱାଦଶରେ ଗ୍ରହ ଯୋଗ ବା ଦୃଷ୍ଟି ହେଉଥିଲେ ଅଧିକ ବ୍ୟୟହୁଏ । ଅର୍ଥାତ୍:-ଦ୍ୱାଦଶରେ ଶୁଭ ଯୁକ୍ତ ବା ଶୁଭ ଦୃଷ୍ଟ ହେଉଥିଲେ ସତ୍‌କାର୍ଯ୍ୟରେ ବ୍ୟୟ, ସେହିପରି ପାପଗ୍ରହଦ୍ୱାରା ଅସଦ୍ କାର୍ଯ୍ୟରେ ବ୍ୟୟ ଏବଂ ମିଶ୍ରଗ୍ରହଦ୍ୱାରା ସଦ୍ ଅସଦ୍ ଉଭୟ ପ୍ରକାରେ ବ୍ୟୟ ହୁଏ ।

## ସୂତ୍ର:-ରବିରାହୁ ଶୁକ୍ରୈର୍ନୃପାତ୍ । ୭ ।

## ଚନ୍ଦ୍ର ଦୃଷ୍ଟୌନିଶ୍ଚୟେନ । ୮ ।

ବୁଧେନ ଜ୍ଞାତିଭ୍ୟୋ ବିବାଦାଦ୍ ବା । ୯ ।

ଗୁରୁଣା କରମୂଳାତ୍ । ୧୦ ।

କୁଜ-ଶନିଭ୍ୟାଂ ଭ୍ରାତୃମୁଖାତ୍ । ୧୧ ।

ଏତୈର୍ବ୍ୟୟସ୍ତୁ ଏବଂ ଲାଭଃ । ୧୨ ।

ଅର୍ଥ—ରବି, ରାହୁ, ଶୁକ୍ର ପଦଲଗ୍ନର ଏକାଦଶରେ ଥିଲେ ରାଜା-ଦ୍ୱାରା ଲାଭହୁଏ । ଏବଂ ରବି, ରାହୁ ଓ ଶୁକ୍ର ପଦର ଦ୍ୱାଦଶରେ ଥିଲେ ରାଜାଦ୍ୱାରା ବ୍ୟୟହୁଏ । ଚନ୍ଦ୍ର ଏମାନଙ୍କର ଏକାଦଶ ବା ଦ୍ୱାଦଶକୁ ଦେଖୁଥିଲେ ରାଜାଦ୍ୱାରା ଲାଭ ବା ବ୍ୟୟ ନିଶ୍ଚୟ ହୁଏ । ଏହିପ୍ରକାରେ ଲାଭ ବା ବ୍ୟୟରେ ଅନ୍ୟାନ୍ୟ ଗ୍ରହସମ୍ବନ୍ଧ ନେଇ ସ୍ଥିର କରାଯାଏ । ଅର୍ଥାତ୍:-- ବୁଧ ଏକାଦଶ ବା ଦ୍ୱାଦଶରେ ଥିଲେ ଜ୍ଞାତିବର୍ଗ ନିମିତ୍ତ ବିବାଦ ଦ୍ୱାରା, ବୃହସ୍ପତି ଥିଲେ ଶୁଳ୍କ ( କର ) ଦ୍ୱାରା, ମଙ୍ଗଳ ଓ ଶନି ଥିଲେ ଭାଇ ପ୍ରଭୃତିଙ୍କ ଦ୍ୱାରା ଲାଭ ବା କ୍ଷତି ହୁଏ ।

ପଦର ସପ୍ତମ ଫଳ

ସୂତ୍ର:-ଲାଭେ ରାହୁକେତୁଭ୍ୟା ମୁଦର ରୋଗଃ । ୧୩ ।

ତତ୍ରକେତୁନା ଝଟିତି ଜ୍ୟାଲଙ୍ଗାନି । ୧୪ ।

ଚନ୍ଦ୍ରଗୁରୁ ଶୁକ୍ରେଷୁ ଶ୍ରୀମନ୍ତଃ । ୧୫ ।

ଭଟଚେନ ବା । ୧୬ । ସ୍ୱାଂଶବଦନ୍ୟତ୍-
ପ୍ରାୟେଣ । ୧୭ ।

ଅର୍ଥ:—ପଦଲଗ୍ନର ( ଲାଭ ) ସପ୍ତମରେ ରାହୁ ବା କେତୁ ଥିଲେ ଉଦର ରୋଗହୁଏ । ପଦଲଗ୍ନର ଦ୍ୱିତୀୟସ୍ଥ କେତୁ ଶୀଘ୍ର ବାର୍ଦ୍ଧକ୍ୟ ଚିହ୍ନାଦ ( କେଶପକ୍ୱତାଦ ) ବ୍ୟକ୍ତ କରାଏ । ପଦର ଦ୍ୱିତୀୟସ୍ଥ ଚନ୍ଦ୍ର ବୃହସ୍ପତି ଓ ଶୁକ୍ର ଦ୍ୱାରା ମନୁଷ୍ୟ ଶ୍ରୀମାନ୍ ହୁଏ । ଏହି ଦ୍ୱିତୀୟରେ କୌଣସି ଉଚ୍ଚଗ୍ରହ ଥିଲେ ମଧ୍ୟ "ଶ୍ରୀମାନ୍" ଯୋଗ ହୁଏ । ଅନ୍ୟାନ୍ୟ ଫଳ କାର-କାଂଶ ପରି ବିଚାର କରିବେ ।

ସୂତ୍ର:-ଲାଭପଦେ କେନ୍ଦ୍ରେ ତ୍ରିକୋଣେ-
ବା ଶ୍ରୀମନ୍ତଃ । ୧୮ ।
ଅନ୍ୟଥା ଦୁଃସ୍ଥେ । ୧୯ ।
କେନ୍ଦ୍ରତ୍ରିକୋଣୋପଚୟେଷୁ ଦ୍ୱୟୋଃ-
ମୈତ୍ରୀ । ୨୦ । ରିପୁରୋଗ ଚନ୍ତାସୁ
ବୈରମ୍ । ୨୧ । ପତ୍ନୀଲାଭୟୋର୍ଦିଷ୍ଟ୍ୟା
ନିରାଭାସାର୍ଗଲୟା । ୨୨ । ଶୁଭାର୍ଗଲେ
ଧନ ସମୃଦ୍ଧିଃ । ୨୩ । ଜନ୍ମକାଲ
ଘଟିକାସ୍ୱେକଦୃଷ୍ଟାସୁ ରାଜାନଃ । ୨୪ ।

ଅର୍ଥ:--ପଦଲଗ୍ନ ରାଶିଠାରୁ ସପ୍ତମଭାବର ପଦ ( ଆରୂଢ଼ ) କେନ୍ଦ୍ର ବା ତ୍ରିକୋଣରେ ହେଲେ ମନୁଷ୍ୟ ଶ୍ରୀମାନ୍ ହୁଏ । ଏହାର ବିପରୀତ ହେଲେ ମନୁଷ୍ୟ ଦରିଦ୍ର ହୁଏ । ଲଗ୍ନ-ପଦଠାରୁ ସପ୍ତମ ଭାବର ପଦରାଶି କେନ୍ଦ୍ର, ତ୍ରିକୋଣ ଓ ( ଷଷ୍ଠବିନା ) ଉପଚୟସ୍ଥ ହେଲେ ସ୍ତ୍ରୀ ପୁରୁଷ ମଧ୍ୟରେ ପ୍ରେମ ହେତେ । କିନ୍ତୁ ଷଷ୍ଠାଷ୍ଟମ ଦ୍ୱାଦଶ ହେଲେ ଶତ୍ରୁତା ବଢ଼େ । ଏହି ପ୍ରକାର ତୃତୀୟ ପଦଦ୍ୱାରା ଭ୍ରାତା ଚତୁର୍ଥ-ପଦଦ୍ୱାରା ମାତା ଓ ପଞ୍ଚମ ପଦଦ୍ୱାରା ପିତା ଓ ପୁତ୍ର ପ୍ରଭୃତି-ଙ୍କର ଶତ୍ରୁ ମିତ୍ର ବିଚାର କରିବେ । ଲଗ୍ନପଦ ଏବଂ ଏହାର ସପ୍ତମରେ ପ୍ରତିବନ୍ଧକ ରହିତ "ଅର୍ଗଳା" ଯୋଗ-ହେଲେ ମନୁଷ୍ୟ ଭାଗ୍ୟବାନ୍ ହୁଏ । ଶୁଭଗ୍ରହକୃତ ଅର୍ଗଳା ହେଲେ ଦିନୁଦିନ ଧନର ବୃଦ୍ଧି ହୁଏ । ପାପ ଗ୍ରହକୃତ ଅର୍ଗଳା ଯୋଗୁଁ ପୂର୍ବସଞ୍ଚିତ ଧନ କେବଳ ରହେ । ଯେ କୌଣସି ଗୋଟିଏ ଗ୍ରହ ଯଦି ଜନ୍ମଲଗ୍ନ, ହୋରା-ଲଗ୍ନ ଓ ଘଟିକାଲଗ୍ନକୁ ଦେଖେ ତେବେ ସେ ରାଜା ହୁଏ ।

### ଘଟିକା ଲଗ୍ନ ବିଚାର

"ଲଗ୍ନା ଦେକ ଘଟିମାନଂ ଯାତି ଲଗ୍ନଂ ଦିନେ ଦିନେ ।
ପରନ୍ତୁ ଘଟିକାଲଗ୍ନଂ ନିର୍ଦ୍ଦିଶେତ୍ କାଳବିତ୍ତମଃ ।"

ପୂର୍ବନିୟମାନୁସାରେ ଘଟିକାଲଗ୍ନ ମଧ୍ୟ ସୂର୍ଯ୍ୟଠାରୁ ଗଣନା

କରାଯାଏ । ଘଟିକା ଲଗ୍ନାନୟନର ନିୟମ ହେଉଛି ଏହି ଯେ, ଇଷ୍ଟଘଟୀ ସମାନ ରାଶି ଓ ପଳାର୍ଧ ସମାନ ଅଂଶକୁ ରବି ସ୍ଫୁଟରେ ମିଶାଇଲେ ଘଟିକା ଲଗ୍ନ ହେବ ।

ରାଜଯୋଗାଦି ବିଚାର

**ସୂତ୍ର:—ଏବମଂଶତୋ ଦୃକ୍‌କାଣତଶ୍ଚ । ୨୪ ।**
**ପତ୍ନୀଲାଭୟୋଶ୍ଚ ରାଶ୍ୟଂଶକ**
**ଦୃକ୍‌କାଣୈର୍ବା । ୨୬ । ତେଷ୍ୱେକସ୍ମିନ୍**
**ନ୍ୟୂନେ ନ୍ୟୂନମ୍ । ୨୭ ।**

ଅର୍ଥ:—ଏହିପରି ଅଂଶ, ଦ୍ରେକ୍‌କାଣରୁ ମଧ୍ୟ ରାଜ ଯୋଗ ବିଚାର କରାଯାଏ । ଅର୍ଥାତ୍ ଯେପରି ଜନ୍ମଲଗ୍ନ, ହୋରାଲଗ୍ନ ଓ ଘଟୀଲଗ୍ନକୁ ଗୋଟିଏ ମାତ୍ର ସମଗ୍ରହ ଦେଖିଲେ ରାଜଯୋଗ ହୁଏ ସେହିପରି ଏମାନଙ୍କ ନବାଂଶ ରାଶି ବା ଦ୍ରେକ୍‌କାଣ ରାଶିକୁ ମଧ୍ୟ ଗୋଟିଏ ସମଗ୍ରହ ଦେଖିଲେ ରାଜ ଯୋଗ ହେବ । ରାଶିକୁଣ୍ଡଳୀ, ( ଜନ୍ମରାଶି ଯାହାହେବ ସେହେବ ଲଗ୍ନ ଓ ଗ୍ରହସ୍ଥିତି ଯଥାବତ୍ ରହିବ, ଏହାକୁ ରାଶି କୁଣ୍ଡଳୀ କୁହାଯାଏ ) ନବାଂଶ କୁଣ୍ଡଳୀ ଓ ଦ୍ରେକ୍‌କାଣ କୁଣ୍ଡଳୀର ଲଗ୍ନକୁ ଯେଉଁ ଗ୍ରହଟି ଦେଖୁଥିବ ସେ ଯଦି ଏହି ତିନୋଟି କୋଷ୍ଠୀର ସପ୍ତମ ଭାବକୁ ଦେଖୁଥାଏ ତେବେ ମଧ୍ୟ ରାଜାହୁଏ । ଏଥିରେ ଯେପରି ବଳବାନ୍ ଦୁର୍ବଳ ଗ୍ରହର ଦୃଷ୍ଟି ପଡୁଥିବ ସେପରି ବଳବାନ୍ ବା ଦୁର୍ବଳ ରାଜଯୋଗ କଳ୍ପନା କରାଯିବ ।

ସେହିପରି ମଧ ପରାଶରାଦି ଉକ୍ତ ଯଥା

"ବିଲଗ୍ନ ଘଟିକାଲଗ୍ନ ହୋରାଲଗ୍ନାନି ପଶ୍ୟତି-।
ଉଚ୍ଚଗ୍ରହେ ରାଜଯୋଗୋ ଲଗ୍ନଦ୍ୱୟମଥାପିବା ।
ରାଶେ ର୍ଦ୍ରେକ୍କାଣତୋଽଂଶାଚ୍ଚ ରାଶେରଂଶାଦଥାପିବା ।
ଯଦ୍ୱା ରାଶି ଦ୍ରେକ୍କାଣାଭ୍ୟାଂ ଲଗ୍ନଦ୍ୱୟାତ୍ତୁ ଯୋଗଦଃ ।
ପ୍ରାୟେଣାସ୍ମିନ୍ ଜାତକେଷୁ ପ୍ରଭୂତାମେବ ଦୃଶ୍ୟତେ ।"

ଅନ୍ୟତ୍ର ମଧ

"ଜନ୍ମକାଳ ଘଟୀଲଗ୍ନେଷ୍ୱେକେନୈବେକ୍ଷିତେଷୁ ତୁ ।
ଉଚ୍ଚାରୂଢେତୁ ସପ୍ତାପ୍ତେ ଚନ୍ଦ୍ରକାନ୍ତେ ବିଶେଷତଃ ।
କାନ୍ତେ ବା ଗୁରୁଶୁକ୍ରାଭ୍ୟାଂ କେନାପ୍ୟୁଚ୍ଚ ଗ୍ରହେଣବା ।
ଦୃଷ୍ଟାର୍ଗଳ ଗ୍ରହାଭାବେ ରାଜ ଯୋଗୋ ନସଂଶୟଃ ।"

ପାପଗ୍ରହଦ୍ୱାରା 'ଅର୍ଗଳଯୋଗ' ନ ହେଲେ ଉକ୍ତ ରାଜ-ଯୋଗ ଘଟିବ । ପୁଣି—

"ଲଗ୍ନାଂଶାର୍ଦ୍ଧୀଚ ଦିନାର୍ଦ୍ଧୀଚ ପଂଷୋର୍ଦ୍ଧ ଦ୍ୱିନାଡିକା ।
ଶୁଭାତଦୁଦ୍ଭବୋ ରାଜା ଧନୀ ବା ତତ୍ସମୋଽପିବା ।
ଶୁଭାରୂଢେ ଭବ ଚନ୍ଦ୍ରେ ଧନେ ଦେବ ଗୁରୁସ୍ତଥା ।
ଉଚ୍ଚନ୍ଦ୍ରସ୍ଥଗ୍ରହେ ବାଽର୍ଥେଽପ୍ୟୁଚ୍ଚଖେଟେଽଥବା ତଥା ।"

ଶୁଭାରୂଢଲଗ୍ନସ୍ଥ ଚନ୍ଦ୍ର ଓ ଦ୍ୱିତୀୟରେ ବୃହସ୍ପତି ଥାଇ ଯଦି କୌଣସି ଉଚ୍ଚଗ୍ରହ ଆରୂଢ ଲଗ୍ନକୁ ଦେଖୁଥାଏ ବା

ଆରୂଢର ଦ୍ୱିତୀୟରେ ଉଚ୍ଚଗ୍ରହ ଥାଏ ତେବେ ମଧ୍ୟ ଜାତକ ଯୋଗଶାଳୀ ହେବ । ପୁଣି —

"ଶୁଭାରୂଢେ ତନ ଚନ୍ଦ୍ରେ ଧନେ ଦେବ ଗୁରୌସ୍ଥିତେ ।
ଆରୂଢେଽସ୍ମିନ୍—ଶୁକ୍ର ଦୃଷ୍ଟେ ବାହନାଢ଼୍ୟୋ ଭବେନ୍ନରଃ ।"

ପୂର୍ବୋକ୍ତ ଯୋଗ ଗୁଡିକ ଜନ୍ମଲଗ୍ନରୁ ମଧ୍ୟ ବିଚାର କରିବା ଉଚିତ । ସେହିପରି—

"ଆରୂଢ ଯୋଗାଃ ସର୍ବେଽପି ଜନ୍ମଲଗ୍ନେଽପିଚେଦ୍ଦ୍ବିଜାଃ ।
ଜନ୍ମଲଗ୍ନାଚ୍ଚତୁର୍ଥେଽସ୍ତେ ତୃତୀୟେ ପାପଖେଚରେ ।
ଚତୁର୍ଥେଽପି ଶୁଭେପାପେ ରାଜାବାତତ୍ସମୋଽପିବା ।"

ଜନ୍ମ ଲଗ୍ନର ଚତୁର୍ଥ ଓ ସପ୍ତମରେ ଶୁଭଗ୍ରହ ଏବଂ ତୃତୀୟରେ ପାପଗ୍ରହ ଥିଲେ ରାଜା ବା ତତ୍ତୁଲ୍ୟ ହୁଏ ।

"ଚତୁର୍ଥ କାମାର୍ଥଲାଭପଦ୍ ଦୃଷ୍ଟେ ଚ ଲଗ୍ନଭେ ।
ଆରୂଢଲାଭେ କବନା ଦୃଷ୍ଟେଽପ୍ୟାରୂଢଭେ ଶୁଭେ ।"

ଚତୁର୍ଥ, ସପ୍ତମ, ଦ୍ୱିତୀୟ ଓ ଏକାଦଶାଧିପତି ଯଦି ଲଗ୍ନକୁ ଦେଖୁଥାନ୍ତି ଏବଂ ଶୁକ୍ର ଆରୂଢର ଏକାଦଶକୁ ଓ ଆରୂଢକୁ ଦେଖୁଥିଲେ ମଧ୍ୟ ରାଜା ବା ତତ୍ତୁଲ୍ୟ ଯୋଗ ହୁଏ ।

"ଉଚ୍ଚୋବା ହରଣାଂଶୋ ବା ସ୍ୱଭୋବା ଶୁକ୍ରଏବ ବାଂ
ଏକୋବଲୀ ଧନପତିଃ ଶ୍ରିୟଂଦଶତି ଦେହିନାମ୍ ।"

ଜନ୍ମଲଗ୍ନ ବା ପଦଲଗ୍ନରେ ନବମରେ ବା ଦ୍ୱିତୀୟରେ

କୌଣସି ଉଚ୍ଚଗ୍ରହ, ଚନ୍ଦ୍ର, ବୃହସ୍ପତି ବା ଶୁକ୍ର ବଳୀ ହୋଇ ଥିଲେ ଜାତକ ଧନବାନ୍ ହୁଏ । ସେହିପରି ମଧ୍ୟ

"ଲଗ୍ନଂ ପଶ୍ୟନ୍ତି ଯେ ଖେଟାସ୍ତେ ସର୍ବେ ଶୁଭ ଦାୟିନଃ ।
ନୀଚଖେଟୋଽପି ଲଗ୍ନଂ ଚେତ୍ ପଶ୍ୟେଦ୍ରାଜା ପ୍ରକୀର୍ତ୍ତିତଃ ।
ରାଜ ଯୋଗୋଜନ୍ମ ଲଗ୍ନଂ ପଶ୍ୟେଦୁଚ୍ଚ ଗ୍ରହୋଯଦି ।
ଷଷ୍ଠାଷ୍ଟମ ଗତେ ନୀଚେ ଲଗ୍ନଂ ପଶ୍ୟତି ବା ତଥା ।
ଷଷ୍ଠାଷ୍ଟମ ଭବୌ ଖେଟୌ ଶୁଭୌତୌ କେଚନାଶ୍ରିତୌ ।
ପଶ୍ୟତୋ ଜନ୍ମଲଗ୍ନଂ ଚେଦ୍ରାଜଯୋଗ ଉଦାହୃତଃ ।
ତ୍ରିକୋଣ କେନ୍ଦ୍ରସ୍ଥଖେଟ ଦୃଷ୍ଟିର୍ଲଗ୍ନେ ଶୁଭ ପ୍ରଦା ।
ଚତୁର୍ଥ ନବମସ୍ଥସ୍ୟ ଦୃଷ୍ଟିରତ୍ୟୁତ୍ତମା ସ୍ମୃତା ।
ଚତୁର୍ଥେ ଶୁଭଖେଟ ଶ୍ଚେଦ୍ରାଜ ଯୋଗ ଉଦାହୃତଃ ।
ବଳବାନ ସ୍ୟା ଚ୍ଚତୁର୍ଥୋଽପି ଚତ୍ୱାଦସ୍ତୁ ଯଥୋତ୍ତରମ୍ ।
ଉଚ୍ଚାଦ୍ୟୁକ୍ତୋ ଗ୍ରହଃକଶ୍ଚିଲ୍ଲାଭସ୍ଥୋ ବା ଚତୁର୍ଥ ଗଃ ।
ଧନସ୍ଥିତୋ ବା ଲଗ୍ନଂଚେତ୍ ପଶ୍ୟଦ୍ ବାହନ କାରକଃ ।"

ଚନ୍ଦ୍ର, ବୃହସ୍ପତି, ଶୁକ୍ର ଭିତରୁ କେହି ଯଦି ଏକାଦଶ, ବା ଚତୁର୍ଥ, ଦ୍ୱିତୀୟରେ ଉଚ୍ଚ ହୋଇଥାଏ ବା ଉଚ୍ଚସ୍ଥ ହୋଇ ଲଗ୍ନକୁ ଦେଖୁଥାଏ ତେବେ ଜାତକକୁ ବାହନାଦି ଯୁକ୍ତ କରଏ ।

"ରାଜଯୋଗାଦ୍ୟଭାବେତୁ ଧନାଧନ ବିନିର୍ଣ୍ଣୟଃ ।
ଶୁଭପାପ ଦୃଶା ଲଗ୍ନେ ତତଃ କେନ୍ଦ୍ରାଦ ଯୋଗତଃ ।

ରାଜଯୋଗ ଅଭାବରେ ଲଗ୍ନକୁ ଶୁଭ ଗ୍ରହ ଦେଖୁଥିଲେ ଧନ ଓ ପାପଗ୍ରହ ଦେଖୁଥିଲେ ନିର୍ଧନ, ସେହିପରି କେନ୍ଦ୍ରରେ ଶୁଭ ସମ୍ବନ୍ଧ ଥିଲେ ଧନୀ ଓ ପାପସମ୍ବନ୍ଧ ଥିଲେ ଧନ ହାନି କଳ୍ପନା କରାଯାଏ । ଅନ୍ୟତ୍ରମଧ୍ୟ

"ଯସ୍ୟଲଗ୍ନାଂ ଶକେ ସୌମ୍ୟଃ ପ୍ରାବଲ୍ୟଂ ତସ୍ୟନିଶ୍ଚିତମ୍ ।
ଲଗ୍ନାଂଶ କେନ୍ଦ୍ରେଷୁ ଶୁଭେ ନିଗ୍ରହାନୁଗ୍ରହକ୍ଷମଃ ।
ଲଗ୍ନତ୍ରିକୋଣେ ଦ୍ୱୌପାପୌ ମିଳିତୌ ଯଦପଶ୍ୟତଃ ।
ଜନ୍ମଲଗ୍ନଂ ବିଶେଷେଣ ଯୋଗୋଦାରିଦ୍ର୍ୟ ନାମକଃ ।
ଏବଂ ଧନେଽପି ଦ୍ରଷ୍ଟବ୍ୟଂ ମହାଦାରିଦ୍ର୍ୟ କାରକମ୍ ।"

ଜନ୍ମଲଗ୍ନର ତ୍ରିକୋଣପର ଅଥବା ଦ୍ୱିତୀୟରେ ଦୁଇଟି ପାପଗ୍ରହ ମିଶି ଯଦି ଲଗ୍ନକୁ ଦେଖୁଥାନ୍ତି ତେବେ ମହାଦାରିଦ୍ର୍ୟ ଯୋଗ ହୁଏ । ପୁଣି ମଧ୍ୟ

"ପାପାରୂଢେ ପାପଖେଟେ ଭବନ୍ତ୍ୱେ ବ୍ୟୟଗେରବୌ ।
ଚନ୍ଦ୍ରେ ସ୍ଥିତୌଚ ତଦ୍ଦୃଷ୍ଟେ ବ୍ୟୟେ ନିର୍ଧନ ଏବସଃ ।
ଅଷ୍ଟମ କ୍ଷେତ୍ର ପତନା ଦୃଷ୍ଟେଽନ୍ୟେନାବଲୋକିତେ ।

ପାପାରୂଢେ ତଥା ଲଗ୍ନେ ସ୍ଥିତିର୍ଭଯ୍ୟଚର୍ଯ୍ୟଶିତେ ।
ମାତୃଗ୍ରହେଣ ସଂଦୃଷ୍ଟେ ପାପାରୂଢେ ତଥା ଗ୍ରହେ ।
ଅନୈୟ୍ୟର୍ନ ବାକ୍ଷିତେ ମିଶ୍ରୈ ର୍ଯୋଗୋମିଶ୍ରଂ ବଦେଦ୍ ବୁଧଃ ।
ଐଶ୍ୱର୍ଯ୍ୟଂ ସ୍ୟାଚ୍ଛୁଭାରୂଢେ ପାପାରୂଢେ ଦରିଦ୍ରତା ।
ତାରତମ୍ୟ,ବଧ୍ୟଂ ଜ୍ଞାତ୍ୱା ଫଳଂ ବ୍ରୂୟାତ୍ ବିଚକ୍ଷଣଃ ।
ଚନ୍ଦ୍ରାରୂଢ ଦଶାର୍ତ୍ତ ସର୍ବଂ ଲଗ୍ନାରୂଢ ଦଶାତ୍ତ ତତଃ ।
ଦାରିଦ୍ର୍ୟ ରାଜ ଯୋଗାଦୀନ୍ ସର୍ବାନ୍ ଯୋଗାନ୍ ପ୍ରଚିନ୍ତୟେତ୍ ।
ଚନ୍ଦ୍ରାରୂଢ ଦଶାତ୍ତ ପ୍ରଶ୍ନଂ କୀର୍ତ୍ତୀୟ୍ଯାତ୍ ବୁଦ୍ଧିମାନରଃ ।
ଭାବଗ୍ରହାତ୍ କାରକାଚ ପିତ୍ର ଚିନ୍ତାଫଳଂ ବଦୁଃ ।
କେଚିତ୍ ତତ୍ତଦ୍ ଗ୍ରହାରୂଢଂ ତତ୍ତଦ୍ ଭାବାଧିପାତ୍ କମାତ୍ ।
ତ୍ରିକୋଣାଷ୍ଟମଗେପାପେ ଯୁଦ୍ଧ ଦାପ ଭୟାମୟାଃ ।"

ଅର୍ଥାତ୍—ଯେଉଁ ରାଶିର ତ୍ରିକୋଣ ଓ ଅଷ୍ଟମରେ ପାପଗ୍ରହଥିବ ସେହି ରାଶି ଦଶାରେ ଯୁଦ୍ଧ ଓ ପାପକାର୍ଯ୍ୟ, ଭୟ ଏବଂ ଆମୟାଦ ରୋଗ ହେବ । ପୁଣି:—

"ତୃତୀୟ ଷଷ୍ଠଗେ ପାପେ ପ୍ରାବଲ୍ୟଂ ଶତ୍ରୁନିଗ୍ରହ ।
ଶୁଭେଷ୍ଟୁ ବିପରୀତଂ ସ୍ୟାତ୍ ପ୍ରାଗ୍‌ବଲ୍ଲାଭୋଦୟସ୍ଥିତେ ।
ଜନ୍ମ ପ୍ରଦଃ ଶୁଭୋରାଶିରଶୁଭୋଽବାଜନ୍ମପ୍ରଦଃ ।
ଶୁଭରାଶି ଗତେପାପେ କଷ୍ଟ ପୂର୍ବଂ ତତଃଶୁଭମ୍ ।
ପାପରାଶି ଗତେ ସୌମ୍ୟେ ଶୁଭଂ ପୂର୍ବଂ ତତୋଽଶୁଭମ୍ ।
ଶତ୍ରୁରାଶୌ ମିତ୍ରନାଶୋ ମିତ୍ରରାଶୌ ଧନାଗମଃ ।

ତଦୀଶ୍ବରୌ ଭବେଦ୍ ଜାତଁ ର୍ମଚେ ମାତଶ୍ଚ ମାସ୍ତୃସ୍ଥାତ୍ ।
ଏତଦ୍ ରାଶି ଫଳଂ ଶନ୍ତ୍ୟଂ ପ୍ରାଧାନ୍ୟାତ୍ ପାକଭୋଗୟୋଃ ।
ଦ୍ୱିତୀୟେ ପଞ୍ଚମେ ସୌମ୍ୟେ ରାଜପ୍ରୀତି ର୍ଜୟୋଧ୍ରୁବମ୍ ।
ପାପେ ତୃତୀୟେ ଷଷ୍ଠେ ଚ ଶତ୍ରୁନିଗ୍ରହଣଂ ଜୟଃ ।
ଚତୁର୍ଥେତୁ ଶୁଭେ ସୌଖ୍ୟମାରୋଗ୍ୟଂତ୍ୱଷ୍ଟମେଶୁଭେ ।
ଧର୍ମ ବୃଦ୍ଧି ଗୁରୁଜନାତ୍ କଷ୍ଟଂ ଚ ନବମେ ଶୁଭେ ।
ବ୍ୟତ୍ୟୟେ ବ୍ୟତ୍ୟୟୋମିଶ୍ରେ ମିଶ୍ରଂ ପ୍ରକୀର୍ତ୍ତିତମ୍ ।
ପାକେ ଭୋଗେଚ ପାପାଢ୍ୟେ ଦେହ ପୀଡ଼ା ମନୋବ୍ୟଥା ।
ସପ୍ତମେ ପାକ ଭୋଗାଭ୍ୟାଂ ପାପେ ଦାରାର୍ତ୍ତିରୀରତା ।
ଚତୁର୍ଥେ ସ୍ଥାନହାନିଃ ସ୍ୟାତ୍ ପଞ୍ଚମେଽପତ୍ୟ ପୀଡନଂ ।
ଦଶମେ କୀର୍ତ୍ତିହାନିଃ ସ୍ୟାତ୍-ନବମେଽପତ୍ୟ ପୀଡନମ୍ ।
ଉଚ୍ଚସ୍ଥାନ ଗତେ ସୌମ୍ୟେ ତତ୍ତତ୍ସୌଖ୍ୟଂବିନିର୍ଦ୍ଦିଶେତ୍ ।
କେନ୍ଦ୍ରସ୍ଥାନ ଗତେ ସୌମ୍ୟେଲଭେଃ ଶତ୍ରୁଜୟପ୍ରଦଃ ।
ବ୍ୟତ୍ୟୟେ ବ୍ୟତ୍ୟୟାସୌ ମିଶ୍ରେ ମିଶ୍ରଂ ପ୍ରକୀର୍ତ୍ତିତମ୍ ।
ଜନ୍ମକାଳ ଗ୍ରହସ୍ଥିତ୍ୟା ଗୋଚରସ୍ଥ ଗ୍ରହୈରପି ।
ବଗୃରତୈଃ ପ୍ରବକ୍ତବ୍ୟଂ ତତ୍ତଦ୍ରାଶିଦଶା ଫଳଂ ।”

ଦଶାପ୍ରଦ ରାଶିର ଦ୍ୱିତୀୟ, ତୃତୀୟାଦି ସ୍ଥାନ ସ୍ଥିତ ଗ୍ରହଦ୍ୱାରା ସେହି ସେହି ରାଶିଦଶାରେ ସୁଖଦୁଃଖାଦି ଫଳ କଳ୍ପନା କରାଯିବ ।

“ଯଷ୍ଠରାଶିଃଶୁଭ-କାନ୍ତୋ ଯସ୍ୟ ପଷ୍ଠାତ୍ ଶୁଭଗ୍ରହଃ ।
ତଦ୍ଦଶା ଶୁଭଦା ପ୍ରୋକ୍ତା ବ୍ୟତ୍ୟୟେ ବ୍ୟତ୍ୟୟଃ ।

ତ୍ରିକୋଣ ରନ୍ଧ୍ର ଦୁଃସ୍ଥସ୍ଥୈଃ ଶୁଭପାପୈଃ ଶୁଭାଶୁଭମ୍ ।"

ସେହି ସେହି ଦଶାନ୍ତରଦଶା ଦ୍ୱାରହିଁ ଏହା ବିଚାର କରାଯିବ । ପୁଣି—

"ମେଷ କର୍କ ତୁଳା ନକ୍ରରାଶିନାଂଚ ଯଥାକ୍ରମମ୍ ।
ବାଧାସ୍ଥାନାଦ୍ଧ ସମ୍ପ୍ରୋକ୍ତାଃ କୁମ୍ଭଗୋସିଂହ ବୃଶ୍ଚିକାଃ ।"

ଅର୍ଥାତ୍:—ଚରରାଶିମାନଙ୍କର ଏକାଦଶ ରାଶି, ସ୍ଥିରରାଶିମାନଙ୍କର ନବମରାଶି ଏବଂ ଦ୍ୱିସ୍ୱଭାବରାଶିମାନଙ୍କର ସପ୍ତମରାଶି ବାଧକ ସ୍ଥାନ ଅଟେ ।

"ପାକେଶ୍ୱରାନ୍ତରାଶେଷ୍ଟ ବାଧାସ୍ଥାନେ ଶୁଭେତରେ ।
ସ୍ଥିତେ ଷଷ୍ଠ ମହାରୋଗୋ ବନ୍ଧନଂ ଦ୍ରବ୍ୟ ନାଶନମ୍ ।
ତଦ୍ଭସ୍ୱର୍କ୍ଷ୍ୟତ୍ରହେ ତସ୍ମିନ୍-ଶୁଭେ ସୌଖ୍ୟଂ ଧନାଗମଃ ।
ତତ୍-ଶୂନ୍ୟଂ ଚେତ୍-ଅସୌଖ୍ୟଂ ସ୍ୟାତ୍ ତଦ୍ଦଶା ନ ଫଳପ୍ରଦା ।

ରାଶିଦଶା ଭୋଗ ସମୟରେ ଅଶୁଭଗ୍ରହଯୁକ୍ତ ବାଧକ ରାଶିର ଅନ୍ତର ବନ୍ଧନାଦ୍ଧ ଦ୍ରବ୍ୟନାଶ କରାଏ ।

"ବାଧକ ବ୍ୟୟଷଷ୍ଠାଷ୍ଟ ରାହୁଭୁକ୍ତୌ ମହଦ୍‌ଭୟମ୍ ।
ସ୍ଥାନଂ ବନ୍ଧନଂ ଚୈବ ବ୍ୟାଧି ପୀଡ଼ାର୍ଥ ନାଶନମ୍ ।
ପାକେଶ୍ୱର ତ୍ରିକୋଣେତୁ ରାହୁକେତୁ ସ୍ଥିତୌ ଯଦ୍ଧ ।
ତତ୍ର ପାକେ ବନ୍ଧନ ପ୍ରାପ୍ତିରାହୁଃ ପୀଡ଼ା ଚପୋର୍ଦ୍ଧୟମ୍ ।
ରବ୍ୟାବରାହୁଶନସ୍ତୋ ଭୁକ୍ତିରାଶୌ ସ୍ଥିତା ଯଦ୍ଧ ।
ତଦ୍ରାଶି ଭୁକ୍ତୌ ପତନଂ ରାଜକୋପୋ ମହାଦ୍‌ଭୟମ୍ ।

ଭୁକ୍ତରାଶି ତ୍ରିକୋଣେଭ୍ରୁ ନୀଚଖେଟ ସ୍ଥିତୌ ଯଦା ।
ତଦ୍ରାଶୌ ବା ନୀଚଯୁତେ ହ୍ୟପମୃତ୍ୟୁଭୟଂ ବଦେଦ୍ଧ ।
ଭୁକ୍ତରାଶୌ ସ୍ୱତୁଙ୍ଗସ୍ଥେ ତତ୍କୋଣେ ବା ସ୍ୱତୁଙ୍ଗଭେ ।
ଯଦା ଭୁକ୍ତଦଶା ପ୍ରାପ୍ତା ତଦାସୌଖ୍ୟଂ ଲଭେ-ନ୍ନରଃ ।
ନଗର ଗ୍ରାମନାଥତ୍ୱଂ ପୁତ୍ରଲଭ ୍ଧନା-ଗମମ୍ ।
କଲ୍ୟାଣଂ ଭୋଗ ଭାଗ୍ୟଂ ଚ ସେନାପତ୍ୟଂ ମହୋନ୍ନତମ୍ ।
ପାକେଶ୍ୱରୋ ଜୀବଦୃଷ୍ଟଃ ଶୁଭରାଶୌ ସ୍ଥିତୋ ଯଦା ।
ତଦ୍ଦଶାୟାଂ ଧନ ପ୍ରାପ୍ତି ମଙ୍ଗଳଂ ସୂତ୍ର ସର୍ଭବମ୍ !

ଦଶାପ୍ରଦ ରାଶିର ଅଧିପତି, ବୃହସ୍ପତି ଦ୍ୱାରା ଦୃଷ୍ଟ ହେଲେ ବା ଶୁଭରାଶିସ୍ଥ ହୋଇ ଥିଲେ ସେହି ରାଶିଦଶା ଭୋଗ ସମୟରେ ଧନଲଭ ଓ ପୁତ୍ରୋତ୍ପନ୍ନାଦି ମଙ୍ଗଳ କାର୍ଯ୍ୟ ସାଧିତ ହୁଏ । ପୁଣି:---

ଯେ ରାଜ ଯୋଗଦା ଯେ ଚ ଶୁଭମଧ୍ୟ-ଗତା ଗ୍ରହାଃ ।
ଯସ୍ମାଦ୍ୱା ଦ୍ୱିତ୍ରିଗାଃସୁଧଃ ଶୁଭାଶୁଭ ଫଳପ୍ରଦାଃ ।
ତଦ୍ଦଶାସୁ ଶୁଭଂ ବ୍ରୂୟାଦ୍ରାଜ ଯୋଗାଦ ସମ୍ଭବମ୍ ।
ଅରମ୍ଭେ ତତ୍କୋଣେଭ୍ରୁ ସୌମ୍ୟେଽପିଶୁଭମାବହେଦ୍ଧ ।
ଗତା ଶୁଭାଦଶାମଧ୍ୟଂ ଦଶା ସୌମ୍ୟସ୍ୟ ଶୋଭନା ।
ଶୁଭେଯସ୍ୟ ନିକୋଣସ୍ଥ ସ୍ତଦ୍ଦଶାଽପି ଶୁଭପ୍ରଦା ।
ଶୁଭରାଶୌ ଶୁଭାରମ୍ଭେ ଦଶାସ୍ୟାଦତିଶୋଭନା
ନୀଗୃହୌ ତଦ୍ଦଶାଦନ୍ତେ ଭବେଦ୍ଧ ଭାଗ୍ୟ ବିପର୍ଯ୍ୟୟଃ ।"

ଅର୍ଥାତ୍—ଦଶାରମ୍ଭରାଶି ଓ ଅନ୍ତର ରାଶିରେ ଯଦି ନୀଚଗ୍ରହ ଥାଏ ବା
ଦାଶାରମ୍ଭ ରାଶି ଓ ଅନ୍ତର ରାଶିର ଅଧିପତି ନୀଚରେ ଥାଏ

ବା ଦଶାରମ୍ଭ ରାଶିଠାରୁ ତ୍ରିକୋଣରେ ନୀଚଗ୍ରହ ଥିଲେ ବା ତ୍ରିକୋଣାଧିପତି ନୀଚସ୍ଥ ହୋଇଥିଲେ ଭାଗ୍ୟର ବିପରୀତ ଘଟାଏ ।

"ରାହ୍ୱୋଃ କେତୋଶ୍ଚ କୁମ୍ଭାଦ ବୃଶ୍ଚିକାଦ ଚତୁଷ୍ଟୟମ୍ ।
ଶୁଭଂ ତତ୍ର ସମାରମ୍ଭେ ତଦ୍ଦଶାୟାଂ ଶୁଭଂ ଭବେତ୍ ।"

କୁମ୍ଭାଦ ଚତୁଷ୍ଟୟ ଓ ବୃଶ୍ଚିକାଦ ଚତୁଷ୍ଟୟସ୍ଥ ରାହୁ ଓ କେତୁ ଦଶା ଶୁଭ ହୋଇଥାଏ ।

"ଯଦ୍ଦଶାୟାଂ ଶୁଭଂ ବ୍ରୂୟାତ୍ ସଚେନ୍ ମାରକ ସଂସ୍ଥିତଃ ।
ଯସ୍ମିନ୍ ରାଶୌ ଦଶାନ୍ତଃ ସ୍ୟାତ୍ତ ତସ୍ମିନ୍ ବୃଦ୍ଧ୍ୟେଯୁତେପିବା ।
ଶୁକ୍ରେଣ ବଧୁନା ବାସ୍ୟାତ୍-ରାଜକୋପାତ୍ ଧନକ୍ଷୟଃ ।
ଦଶାନ୍ତସ୍ତେ ଦକ୍ଷିଣେବେ ରାହୁବୃଦ୍ଧ୍ୟେ ଯୁତେଽପିବା ।
ରାହୋର୍ଦଶାନ୍ତେ ସର୍ବସ୍ୱନାଶୋ ମରଣ ବନ୍ଧନେ ।
ଦେଶାନ୍ତିର୍ବାସନଂ ବା ସ୍ୟାତ୍ କଷ୍ଟଂ ବା ମହଦଶ୍ନୁତେ ।
ତତ୍‌ତ୍ରିକୋଣ ଗତେ ପାପେ ନଷ୍ଟସ୍ୱଂ ଦୁଃଖମାଦ ଶେତ୍ ।
ଏବଂ ଶୁଭାଶୁଭଂ ସର୍ବଂ ଜ୍ଞାତ୍ୱିଭ୍ୟ ପ୍ରବଦେଦ୍ ବୁଧଃ ।
ଦଶାରମ୍ଭୋ ଦଶାନ୍ତୋବା ମାରକେଚେନ୍ନ ଶୋଭନନ୍ ।
ତସ୍ମିନ୍ନେବ ଚ ରାହୌଚେନ୍ନିରୋଧୋ ଦ୍ରବ୍ୟନାଶନମ୍

ଦଶାରମ୍ଭରେ ବା ଶେଷରେ ମାରକଗ୍ରହ ଯୁକ୍ତ ରାଶିଅନ୍ତର ବନ୍ଧନାଦ ଦ୍ରବ୍ୟହାନି ଘଟାଏ ।

"ଯତ୍ରକ୍ୱାପି ଚ ଭେ ରାହୌ ଦଶାରମ୍ଭୋବସାନକମ୍ ।
ଗୃହଭ୍ରଂଶଃ ସମୃଦ୍ଧିକ୍ଷୋ ଧନୈରାହୁ ଧନାର୍ଜିକୃତ୍ ।

ଚନ୍ଦ୍ରଶୁକ୍ରୌ ଦ୍ୱାଦଶେଚେଦ୍ରାଜକୋପୋମହଦ୍‌ଭୟମ୍ ।
ଭୌମକେତୂ ତଦ୍ୱଦେବ ବାଧାଃସ୍ୟୁର୍ଗ୍ରହଣୀଭବେତ୍ ।
ଆରୂଢାତ୍ ଷଷ୍ଠଭେ ପାପେ ଚୌରଃ ସ୍ୟାଚ୍ଛୁଭ ବର୍ଜିତେ ।
ଆରୂଢାତ୍ତଂ ବାପି ସୌମ୍ୟେତୁ ସର୍ବଦଶ୍ୟଧିପୋଭବେତ୍ ।
ସର୍ବଙ୍କ୍ଷତ୍ରେ ଜାତେବସ୍ୟାତ୍ କବର୍ଦାଧୀ ଚ ଭାର୍ଗବେ ।

ଦଶାରମ୍ଭ ବା ସମାପ୍ତି ରାଶିର ଦ୍ୱାଦଶରେ ଉପରୋକ୍ତ ଗ୍ରହଥିଲେ ଏହିଫଳ ଜାଣିବାକୁ ହେବ ।

**ସୂତ୍ର:-ଶୁକ୍ର ଚନ୍ଦ୍ରୟୋର୍ମିଥୋ ଦୃଷ୍ଟ୍ୟୋଃ-**
**ସିଂହସ୍ଥୟୋର୍ବାଯାନବନ୍ତଃ । ୨୮ ।**
**ଶୁକ୍ରକୁଜ କେତୁଷୁ ବୈଣିକାଃ । ୨୯ ।**

ଅର୍ଥ:—ଚନ୍ଦ୍ର ଶୁକ୍ର ପରସ୍ପର ଦେଖା ଦେଖି ହେଉ ଥିଲେ ବା ସିଂହରାଶିସ୍ଥ ହୋଇ ଆରୂଢ଼ ଲଗ୍ନର ତୃତୀୟରେ ଥିଲେ ଏବଂ ଶୁକ୍ରଠାରୁ ଚନ୍ଦ୍ର ତୃତୀୟସ୍ଥ ବା ଚନ୍ଦ୍ରଠାରୁ ଶୁକ୍ର-ତୃତୀୟରେ ଥିଲେ ମନୁଷ୍ୟ ଯାନବାହାନ ଯୁକ୍ତ ହୁଏ ।

ସେହିପରି ମଧ୍ୟ

"ଚନ୍ଦ୍ରଃ କବିଂ କବିଶ୍ଚନ୍ଦ୍ରଂ ପଶ୍ୟତ୍ୟପି ତୃତୀୟଗେ ।
ଶୁକ୍ରାଚ୍ଚନ୍ଦ୍ରେ ତତଃଶୁକ୍ରେ ତୃତୀୟେ ବାହାନାର୍ଥବାନ୍ ।"

ମଙ୍ଗଳ ଶୁକ୍ର ଓ କେତୁ ଯେ କୌଣସିଠାରେ ଥାଇ ସୁଦ୍ଧା ପରସ୍ପର ଦେଖା ଦେଖି ହେଉଥିଲେ ବା ଲଗ୍ନର ତୃତୀୟରେ ଥିଲେ ଛତ୍ରଚାମରାଦି ରାଜ ଚିହ୍ନ ଯୁକ୍ତହୁଏ ।

**ସୂତ୍ର:-ସ୍ୱଭାଗ୍ୟଦାରମାତୃଭାବସମେଷୁ ଶୁଭେଷୁ-ରାଜାନଃ ।୩୦। କର୍ମଦାସୟୋଃ-ପାପୟୋଶ୍ଚ ।୩୧।**

ଅର୍ଥ:—କାରକ ଲଗ୍ନର (ଭାଗ୍ୟ) ଦ୍ୱିତୀୟ (ଦାର) ଚତୁର୍ଥ ଓ (ମାତୃ) ପଞ୍ଚମ ଭାବସ୍ଥଙ୍କଠାରୁ ଶୁଭ ଗ୍ରହମାନଙ୍କର ସ୍ଥିତି ରାଶ୍ୟାଦି ହେଲେ ରାଜଯୋଗ ହୁଏ । (ଏହିପରି ପୂର୍ବାଦି କାରକ ଦ୍ୱାରା ପୁତ୍ର ପ୍ରଭୃତିଙ୍କର ରାଜଯୋଗ ବିଚାର କରାଯିବ) ସେହିପରି କାରକ ଲଗ୍ନର ତୃତୀୟ ଓ ଷଷ୍ଠ ଭାବସ୍ଥିତ ସତ୍ତ୍ୱର ପାପଗ୍ରହମାନଙ୍କର ସ୍ଥିତାଂଶାଦିସମାନ ହେଲେ ଜାତକ ରାଜାହୁଏ ।

**ସୂତ୍ର:-ପିତୃଲାଭାଧିପାଦେବମ୍ ।୩୨। ମିଶ୍ରେ-ସମାଃ ।୩୩। ଦରିଦ୍ରା ବିପରୀତେ ।୩୪।**

ଅର୍ଥ:—ଲଗ୍ନାଧିପତି ଓ ସପ୍ତମାଧିପତିଠାରୁ ମଧ୍ୟ ପୂର୍ବପରି ବିଚାର କରାଯିବ । ଅର୍ଥାତ୍- ଲଗ୍ନାଧିପତି ଓ ସପ୍ତମାଧିପତି ଠାରୁ ଦ୍ୱିତୀୟ, ଚତୁର୍ଥ ଓ ପଞ୍ଚମ ଭାବ ସହ ଯଦି ଶୁଭ ଗ୍ରହସ୍ଥିତି-ସମାନ ହୁଏ । ସେହିପରି ତୃତୀୟ ଓ ଷଷ୍ଠଭାବ ସହ କୌଣସି ପାପ ଗ୍ରହସ୍ଥିତି ଅଂଶାଦି ସମାନ ହେଲେ ଜାତକ ରାଜାହୁଏ । (ଏଠାରେ ଲଗ୍ନଶବ୍ଦରୁ ଜନ୍ମଲଗ୍ନ ଓ ଆରୁଢ଼-ଲଗ୍ନ ମଧ୍ୟ ବୁଝିବାକୁ ହେବ । ) ଉକ୍ତ ସ୍ଥାନ ମିଶ୍ରଗ୍ରହ ସଙ୍ଗେ ସମାନ ହେଲେ ଧନବାନ୍ ହୁଏ । କିନ୍ତୁ ଶୁଭଗ୍ରହ

ସ୍ଥାନରେ ପାପଗ୍ରହସ୍ଥିତି ଓ ପାପଗ୍ରହ ସ୍ଥାନରେ ଶୁଭ ଗ୍ରହର ସ୍ଥିତାଦି ସମାନ ହେଲେ ଦରିଦ୍ର ହୁଏ ।

## ସେନାପତ୍ୟାଦି ଯୋଗ

**ସୂତ୍ର—ମାତରି ଗୁରୌ ଶୁକ୍ରେ ଚନ୍ଦ୍ରେ ବା ରାଜକୀୟାଃ ।୩୪। କର୍ମଣି ଦାସ୍ୟେ ବା ପାପେ ସେନାନ୍ୟଃ ।୩୫।**

ଅର୍ଥ:—ଜନ୍ମଲଗ୍ନ, ଆରୂଢଲଗ୍ନ ବା କାରକଲଗ୍ନର ଲଗ୍ନେଶ ଓ ସପ୍ତମେଶର ପଞ୍ଚମ ସ୍ଥାନରେ ବୃହସ୍ପତି, ଶୁକ୍ର ବା ଚନ୍ଦ୍ର ଥିଲେ ରାଜ କାର୍ଯ୍ୟରେ ନିଯୁକ୍ତ ହୋଇ ଜୀବନ ନିର୍ବାହ କରାଯାଏ । ସେହିପରି ଲଗ୍ନାଧିପତି ଓ ସପ୍ତମାଧିପତିର ତୃତୀୟ ବା ଷଷ୍ଠରେ ପାପଗ୍ରହ ଥିଲେ ସେନାପତି ହୁଏ ।

## ବୁଦ୍ଧିମାନ୍ ଯୋଗ

**ସୂତ୍ର—ସ୍ୱପିତୃଭ୍ୟାଂ କର୍ମଦାସସ୍ଥ ଦୃଷ୍ଟ୍ୟା ତଦୀଶଦୃଷ୍ଟ୍ୟା ମାତୃନାଥ ଦୃଷ୍ଟ୍ୟା ଚ ଧୀମନ୍ତଃ ।୩୬।**

ଅର୍ଥ:—କାରକଲଗ୍ନ ବା ଜନ୍ମଲଗ୍ନଠାରୁ ଯେଉଁ ଗ୍ରହ ତୃତୀୟ ବା ଷଷ୍ଠସ୍ଥ ହୋଇ କାରକଲଗ୍ନ ବା ଜନ୍ମଲଗ୍ନକୁ ଦେଖେ ବା ତୃତୀୟାଧିପ ଓ ଷଷ୍ଠାଧିପର ନଚେତ୍ ପଞ୍ଚମେଶର ସେହି ସ୍ଥାନକୁ ଦୃଷ୍ଟିଥିଲେ ମନୁଷ୍ୟ ବୁଦ୍ଧିମାନ୍ ହୁଏ ।

## ସୁଖ ଦୁଃଖାଦି ଯୋଗ

ସୂତ୍ର:-ଦାରେଶ ଦୃଷ୍ଟ୍ୟା ସୁଖିନଃ । ୩୮ ।
ରୋଗେଶ ଦୃଷ୍ଟ୍ୟା ଦରିଦ୍ରାଃ ୩୯ ।
ରିପୁନାଥ ଦୃଷ୍ଟ୍ୟାବ୍ୟୟଶୀଳାଃ । ୪୦ ।
ସ୍ୱାମିଦୃଷ୍ଟ୍ୟା ପ୍ରବଳାଃ । ୪୧ ।

ଅର୍ଥ:— କାରକ ଓ ଜନ୍ମଲଗ୍ନର ଚତୁର୍ଥେଶ ଯଦି କାରକ ଓ ଜନ୍ମଲଗ୍ନକୁ ଦେଖେ ତେବେ ମନୁଷ୍ୟ ସୁଖୀ ହୁଏ । କାରକ ଓ ଜନ୍ମଲଗ୍ନର ଅଷ୍ଟମାଧିପର ତାହା ଉପରେ ଦୃଷ୍ଟି ଥିଲେ ମନୁଷ୍ୟ ଆଜୀବନ ଦରିଦ୍ର ହୁଏ । ସେହିପରି ଦ୍ୱାଦଶେଶ ଦେଖୁଥିଲେ ଅଧିକବ୍ୟୟୀ ହୁଏ । କାରକେଶ କାରକଲଗ୍ନକୁ ଓ ଲଗ୍ନାଧିପତି ଲଗ୍ନକୁ ଦେଖୁଥିଲେ ମନୁଷ୍ୟ ଶାରୀରିକ ବଳବାନ୍ ହୁଏ ।

## ବନ୍ଧନାଦି କଷ୍ଟ ଯୋଗ

ସୂତ୍ର:-ପଶ୍ଚାଦ୍ଵିପୁଭ୍ରାଗ୍ୟୟୋର୍ଗ୍ରହସାମ୍ୟେ ବନ୍ଧଃ
କୋଣୟୋ ରିପୁକାୟୁୟୋଃ କୀଟ-
ଯୁଗ୍ମୟୋଃଦାରରିଃଫୟୋଶ୍ଚ । ୪୨ ।
ଏବମୃକ୍ଷାଣାଂ ତଦୀଶାନାଂ ଚ ଶୁଭସମ୍ବନ୍ଧେ-
ନ୍ନିରୋଧ ମାତ୍ରଂ ପାପସମ୍ବନ୍ଧାଚ୍ଛୃଙ୍ଖଳା-
ପ୍ରହାରାଦୟଃ । ୪୩ ।

ଅର୍ଥ:—ଜନ୍ମଲଗ୍ନ ଓ କାରକ ଲଗ୍ନରୁ ( କ୍ରମ ) ଦ୍ୱିତୀୟ, (ଭାଗ୍ୟ) ଦ୍ୱାଦଶ, ପଞ୍ଚମ ନବମ, ଷଷ୍ଠ ଦ୍ୱାଦଶ ତୃତୀୟ ଏବଂ ଏକାଦଶରେ ବା ଚତୁର୍ଥ ଦଶମରେ ଗ୍ରହସାମ୍ୟ ହେଲେ ( ସମାନସଂଖ୍ୟକ ଗ୍ରହଥିଲେ ) ଜାତକ ବନ୍ଧନରେ ପଡ଼ି କଷ୍ଟଭୋଗ କରେ ।

ଏମାନଙ୍କର ଅଧିପତି ଶୁଭଗ୍ରହ ସହ ସମ୍ବନ୍ଧ ରଖିଥିଲେ କେବଳ ବନ୍ଦୀ ହୋଇରହେ । କିନ୍ତୁ ସେହି ଅଧିପତି ଯଦି ପାପଗ୍ରହସହ ସମ୍ବନ୍ଧ ରଖେ ତେବେ ହସ୍ତ ପଦାଦି ବନ୍ଧନ ହୋଇ ପ୍ରହାର ମଧ୍ୟ ପାଏ ।

## ଚକ୍ଷୁନାଶ ଓ ରାଜଚିହ୍ନ ଯୋଗ

**ସୂତ୍ର:-ଶୁକ୍ରାଦ୍ ଗୌଣପଦସ୍ଥୋ ରାହୁଃସୂର୍ଯ୍ୟ ଦୃଷ୍ଟୋନେତ୍ର ହା । ୪୪ । ସ୍ୱଦାରଗୟୋଃ ଶୁକ୍ରଚନ୍ଦ୍ରୟୋର୍ଲାଭୋଦ୍ୟଂରାଜ ଚିହ୍ନାନି ଚ । ୪୫ ।**

ଅର୍ଥ:—ଲଗ୍ନଠାରୁ ପଞ୍ଚମଭାବ ପଦରେ ରାହୁଯୁକ୍ତ ହୋଇ ରବିଦୃଷ୍ଟ ହେଲେ ଚକ୍ଷୁ ନାଶହୁଏ । କାରକାଂଶ ଲଗ୍ନର ଚତୁର୍ଥସ୍ଥ ଶୁକ୍ର ଓ ଚନ୍ଦ୍ର ମନୁଷ୍ୟକୁ ଛତ୍ରଚାମରାଦି ରାଜଚିହ୍ନରେ ଭୂଷିତ କରନ୍ତି ।

(ପ୍ରସଙ୍ଗାଦନ୍ୟେଽପି ନେତ୍ରରୋଗାଃ ସଂଗୃହ୍ୟଲିଖ୍ୟନ୍ତେ)

## ମିଲତାକ୍ଷ୍ୟ ଯୋଗ

"ଧନେ ବା ବ୍ୟୟେ ପାପେ ମିଲତାକ୍ଷଃ" । ୧ । (ଜାତକତତ୍ତ୍ୱ)

ଲଗ୍ନର ଦ୍ୱିତୀୟ ବା ଦ୍ୱାଦଶରେ ପାପଗ୍ରହଥିଲେ ମିଲତାକ୍ଷ (ମିଞ୍ଜି ମିଞ୍ଜି ଆଖି) ହୁଏ ।

## ବିକଳ ନୟନ ଯୋଗ

"ସକ୍ରୂରାର୍କୋଽନ୍ତ୍ୟେ ବା ତ୍ରିକୋଣେ ବିକଳ ନୟନଃ" । ୨ ।

ପାପଗ୍ରହଯୁକ୍ତ ରବି ଲଗ୍ନର ଦ୍ୱାଦଶରେ ବା ନବମ ପଞ୍ଚମରେ ହେଲେ ଜାତକ ବିକଳ ନେତ୍ର ହୁଏ ।

## ମନ୍ଦଲୋଚନ ଯୋଗ

"ଧନେ ବା ବ୍ୟୟେ ଶୁକ୍ରେ ପାପଯୁତେ କାଣୋମନ୍ଦଲୋଚନଃ" ।୩।

ଲଗ୍ନର ଦ୍ୱିତୀୟ ବା ଦ୍ୱାଦଶରେ ପାପଗ୍ରହଯୁକ୍ତ ଶୁକ୍ରଥିଲେ କାଣହୁଏ ବା ଦୃଷ୍ଟିଶକ୍ତି ଅଳ୍ପରହେ ।

## ରକ୍ତନେତ୍ର ଯୋଗ

"ପୁଷ୍ପବଂତାବସଦ୍ଦୃଷ୍ଟୌ ବର୍ଗଷଡ଼ଗୌ ବା ତ୍ରିକେ ରକ୍ତନେତ୍ରଃ" ।୪।

"ଚନ୍ଦ୍ରାଗ୍ ବେକଭଗେଽକ୍ଷଣୋଷ୍ଟିଘ୍ନମ୍ । ୫ ।

ରବି ଚନ୍ଦ୍ର ଉଭୟେ ବିଂଶଗ୍ରହ ଗ୍ରସ୍ତ ହୋଇ ପାପଦୃଷ୍ଟ ହେଲେ ବା ୬, ୮, ୧୨, ଘରସ୍ଥ ହେଲେ ରକ୍ତ ନେତ୍ର ( ଟେରା ) ହୁଏ ।

ଚନ୍ଦ୍ର ଓ ମଙ୍ଗଳ ଏକ ନବାଂଶରେ ( ଝୁଦ୍ୟନିଙ୍କେ ୨ ଅଂଶ ଭିତରେ ଏକରାଶିସ୍ଥ ) ହେଲେ ଚକ୍ଷୁରେ ଚନ୍ଦ୍ରପୁଷ୍ପ ହୁଏ ।

## ନେତ୍ରରୋଗୀ ଯୋଗ

"ଷଷ୍ଠେଶେ ବକ୍ରଗର୍ଷେଃକ୍ଷି ରୋଗୀ । ୬ ।

ଜ୍ଞାନର୍ଷେ ଲଗ୍ନପେଷ୍ଟାର ଦୃଷ୍ଟେଃକ୍ଷିରୋଗୀ । ୭ ।

ରନ୍ଧ୍ରାଂଗେଶୌ ଷଷ୍ଠେ ସବ୍ୟନେତ୍ରେରୋଗଃ । ୮ ।

ଷଷ୍ଠେଷ୍ଟମେଶୁକ୍ରେ ଦକ୍ଷିଣ ନେତ୍ରେ ରୋଗଃ । ୯ ।

ଧନେଶେ ଶୁକ୍ରେକ୍ଷିତେ ଲଗ୍ନେଶେ ପାପଯୁତେ—
ସରୋଗନେତ୍ରଃ । ୧୦ ।

ମନ୍ଦାର ଗୁଳିକଯୁତେ ନେତ୍ରେଶେ ନେତ୍ରରୋଗଃ ।୧୧।

ନେତ୍ରେ ପାପା ଯମଦୃଷ୍ଟା ନେତ୍ରେ—
ରୋଗହତଂଭବେତ୍ତୁ । ୧୨ ।

ନେତ୍ରେଶାଂଶେ ପାପର୍କ୍ଷେ ରୋଗ ହତନେତ୍ରଃ । ୧୩ ।

ଲଗ୍ନାଷ୍ଟମେ ଶୁକ୍ରେ କ୍ରୂରଦୃଷ୍ଟେଶ୍ରୁପାତାନ୍ନେତ୍ରପୀଡ଼ା ୧୪

ଲଗ୍ନେ ଭୌମଶଯୁତେ ନଷ୍ଟନେତ୍ରଃ । ୧୫ ।

ଚନ୍ଦ୍ରେଶ ଶୁକ୍ରଯୋଗେ ନେତ୍ରରୋଗୀ । ୧୬ ।

ଶୁକ୍ରାତ୍ଷଷ୍ଠକେ ନେତ୍ରେଶେ ନେତ୍ରରୋଗୀ । ୧୭ ।

ତ୍ରିକୋଣସ୍ଥେଃ ପାପଦୃଷ୍ଟେ ଜ୍ଞାତ୍ରେକୋନେତ୍ରଃ ।୧୮।

ବକ୍ରଗତ ଗ୍ରହ-ରାଶିସ୍ଥ ଷଷ୍ଠାଧିପତି ନେତ୍ରରୋଗୀକରାଏ । ୬ । ଲଗ୍ନାଧିପତି ବୁଧ ( ୩, ୬ ) ବା ମଙ୍ଗଳ ( ୧, ୮ ) ରାଶିସ୍ଥ ହୋଇ, ବୁଧ ବା ମଙ୍ଗଳ ଦ୍ୱାରା ଦୃଷ୍ଟହେଲେ ଜାତକ ନେତ୍ରରୋଗୀ

ହୁଏ । ୭ । ଲଗ୍ନ ଓ ଅଷ୍ଟମାଧିପତି ଷଷ୍ଠସ୍ଥ ହେଲେ ବାମ ନେତ୍ରରୋଗୀ-ହୁଏ । ୮ । ଷଷ୍ଠାଷ୍ଟମସ୍ଥ ଶୁକ୍ର ଦକ୍ଷିଣ ନେତ୍ରରେ ରୋଗ କରାଏ । ୯ । ଧନେଶ ଶୁଭ ଦୃଷ୍ଟ ଓ ଲଗ୍ନାଧିପତି ପାପଯୁକ୍ତ ହେଲେ ସର୍ବଦା ନେତ୍ର ରୋଗ ହୁଏ ।୧୦ । ଦ୍ୱିତୀୟ ଓ ଦ୍ୱାଦଶାଧିପତ୍ରେ ଶନି ମଙ୍ଗଳ-ସହ ଗୁଳିକ ଲଗ୍ନସ୍ଥ ହେଲେ ନେତ୍ରରୋଗୀ ହୁଏ । ୧୧ । ଦ୍ୱାଦଶସ୍ଥ ପାପଗ୍ରହକୁ ଶନି ଦେଖୁଥିଲେ ରୋଗଦ୍ୱାରା ନେତ୍ର ପୀଡ଼ା ହୁଏ । ୧୨। ଦ୍ୱିତୀୟ ଦ୍ୱାଦଶାଧିପତିର ନବାଂଶସ୍ୱାମୀ ପାପଗ୍ରହରାଶିସ୍ଥ ହେଲେ ରୋଗଦ୍ୱାରା ନେତ୍ରପୀଡ଼ା ହୁଏ । ୧୩। ଲଗ୍ନ ଓ ଅଷ୍ଟମସ୍ଥାନ ଶୁକ୍ର-ଦ୍ୱାରା ଦୃଷ୍ଟ ହେଲେ ଅଶ୍ରୁପାତ ଦ୍ୱାରା ନେତ୍ରରୋଗ ହେବ । ୧୪ । ଶୟନାବସ୍ଥାଯୁକ୍ତ ମଙ୍ଗଳ ଲଗ୍ନସ୍ଥ ହେଲେ ନେତ୍ର ପୀଡ଼ାହୁଏ । ୧୫ । ଧନେଶ ଓ ଶୁକ୍ରର ଯୋଗ ନେତ୍ରରୋଗ କରାଏ । ୧୬ । ଶୁକ୍ରଠାରୁ ୬, ୮, ୧୨ ରେ ନେତ୍ରାଧିପତି ଥିଲେ ନେତ୍ରରୋଗୀ ହୁଏ । ୧୭ । ନବମ ବା ପଞ୍ଚମସ୍ଥରବି ପାପଦୃଷ୍ଟ ହେଲେ ନିସ୍ତେଜ ଚକ୍ଷୁହୁଏ ।୧୮।

—଼✱଼—

## ଅଥ ପ୍ରଥମାଧ୍ୟାୟସ୍ୟ ଚତୁର୍ଥ ପାଦଃ —

—ଃ୦ଃ—

### ସୂତ୍ର:-ଉପପଦଂ ପଦଂ ପିତ୍ରନୁଚରାତ୍ । ୧ ।

ଅର୍ଥ:—ବିଷମ ଲଗ୍ନରେ ଦ୍ୱିତୀୟ ଭାବର ପଦକୁ ଉପପଦ ଏବଂ ସମଲଗ୍ନରେ ଦ୍ୱାଦଶଭାବ ପଦକୁ ଉପପଦ କୁହାଯାଏ ।

ଦ୍ରଷ୍ଟବ୍ୟ---ନୀଳକଣ୍ଠାଚାର୍ଯ୍ୟଙ୍କ ମତରେ ଲଗ୍ନର ଦ୍ୱାଦଶଭାବ ପଦକୁ ଉପପଦ ପୁଣି କାହାର କାହାର ମତରେ ଲଗ୍ନର ଦ୍ୱିତୀୟ ଭାବର ପଦକୁ ଉପପଦ କୁହାଯାଏ ।

"ପିତ୍ର୍ୟାନୁଚରାତ୍" ଏହି ପଦକୁ ମାନ୍ନିକରି କେହି କେହି ସପ୍ତମ ଭାବର ପଦକୁ ମଧ୍ୟ ଉପପଦ କହନ୍ତି । ଏହା ବାସ୍ତବିକ ହେଲେ ସୁଦ୍ଧା ଉକ୍ତ ଗ୍ରନ୍ଥରେ ବିଷମ ସମ ଗଣନାର ପ୍ରାଧାନ୍ୟ ଥିବାରୁ ବିଷମ ସମ ଭେଦରେ ଦ୍ୱିତୀୟ ଦ୍ୱାଦଶରୁ ଉପପଦ ନିଷ୍ପନ୍ନ କରିବା ଉଚିତ । ସେହିପରି ପରାଶର ମଧ୍ୟ କହିଛନ୍ତି:---

"ପଦାରୁଢ଼ାଦ୍‌ବ୍ୟୟସ୍ଥାନେ ପଦଂ ତୂପପଦଂ ସ୍ମୃତମ୍ ।
ଲଗ୍ନାନୁଚର ସଂଜ୍ଞଶ୍ଚୋପପଦଂ ଚ ଦ୍ୱିଜୋତ୍ତମ ।"

**ସୂତ୍ର:—ତତ୍ର ପାପସ୍ୟ ପାପଯୋଗେ ପ୍ରବ୍ରଜ୍ୟା-ଦାରନାଶୌ ବା । ୨ ।**

ଅର୍ଥ:---ଉପପଦର ଦ୍ୱିତୀୟରାଶି ପାପଗ୍ରହ ରାଶି ହେଲେ ବା ଉପପଦର ଦ୍ୱିତୀୟ ରାଶିରେ ପାପସଂଯୁକ୍ତ ହେଲେ ପ୍ରବ୍ରଜ୍ୟା (ସନ୍ୟାସୀ) ହୁଏ ବା ସ୍ତ୍ରୀ ବିଯୋଗ ଘଟେ ।

ସେହିପରି ପରାଶର ମଧ୍ୟ କହିଛନ୍ତି ଯଥା:---

"ପାପକାନ୍ତେ ପାପଯୁତେ ପାପର୍କ୍ଷେ ପାପବୀକ୍ଷିତେ ।
ପାପସମ୍ବନ୍ଧ ସଂଯୋଗେ ଉପପଦ୍ୱାଂଚଦ୍ୱିତୀୟକେ ।
ପ୍ରବ୍ରଜ୍ୟା ଯୋଗ ବିଜ୍ଞେୟଃ ସନ୍ୟାସୋ ଭବତି ଧ୍ରୁବମ୍ ।
ତଥା ଭାର୍ଯ୍ୟା ବିନ୍ଦେଧୀସ୍ୟାଦଥ ବା ସ୍ତ୍ରୀ ବିନାଶ କୃତ ।"

**ସୂତ୍ର:-ନାତ୍ର ରବୈଃ ପାପଃ । ୩ । ଶୁଭଦୃଗ୍-ଯୋଗାନ୍ନ । ୪ ।**

ଅର୍ଥ:---ରବି ଉକ୍ତ ପ୍ରକରଣରେ ପାପନୁହେଁ । ତେଣୁ ଉପପଦର ଦ୍ୱିତୀୟସ୍ଥ ରବି ବା ସିଂହରାଶି ହେଲେ ସୁଦ୍ଧା ସ୍ତ୍ରୀ ନାଶ ବା ପ୍ରବ୍ରଜ୍ୟା ଯୋଗ ହେବ ନାହିଁ ।

ସେହିପରି ପରାଶର ମଧ୍ୟ

"ରବି ପାପତ୍ୱ ନାତ୍ରୈବ ସିଂହର୍କ୍ଷେ ପାପଦେ ସତ ।
ପୂର୍ବୋକ୍ତଂ ନୋ ଫଳଂ ଜ୍ଞେୟଂ ଜାୟତେ ଗୃହିଣୀ ସୁଖମ୍ ।"

**ସୂତ୍ର:-ନୀଚେ ଦାରନାଶଃ । ୫ ।**

**ଉଚ୍ଚେ ବହୁଦାରଃ । ୬ । ଯୁଗ୍ମେଚ । ୭ ।**

**ତତ୍ର ସ୍ୱାମିଯୁକ୍ତେ ସ୍ୱର୍କ୍ଷେ ବା ତଦ୍ଧେତାବୁତ୍ତ-ରାୟୁଷି ନିର୍ଦାରଃ । ୮ ।**

ଅର୍ଥ:---ଉପପଦ ଦ୍ୱିତୀୟସ୍ଥ ନୀଚଗ୍ରହ ସ୍ତ୍ରୀ ନାଶକରେ । ଉଚ୍ଚସ୍ଥ-ଗ୍ରହଦ୍ୱାରା ବହୁ ସ୍ତ୍ରୀ ଭୋଗ କରାଏ । ସେହିପରି ମିଥୁନ-ରାଶିରେ ଉପପଦ ଦ୍ୱିତୀୟ ହେଲେ ବହୁତ ସ୍ତ୍ରୀ ମଧ୍ୟ ହୁଏ । ଉପପଦର ଦ୍ୱିତୀୟାଧିପ ଦ୍ୱିତୀୟରେ ବା ନିଜର ଅନ୍ୟ ରାଶିରେ ଥିଲେ ମନୁଷ୍ୟର ଅର୍ଦ୍ଧବୟସରେ ସ୍ତ୍ରୀ ନାଶହୁଏ ।

ଦ୍ରଷ୍ଟବ୍ୟ—ଉପପଦକୁ ନୀଚଗ୍ରହର ଦୃଷ୍ଟି ପଡୁଥିବ ବା ତାର କୌଣସି ସମ୍ବନ୍ଧ ରହୁଥିଲେ ମଧ୍ୟ ସ୍ତ୍ରୀ ନାଶ ହେବ । ସେହିପରି

ଉର୍ଚ୍ଚ ଗ୍ରହର କୌଣସି ସମ୍ବନ୍ଧ ଥିଲେ ସୁଦ୍ଧା ବହୁ ସ୍ତ୍ରୀ ସମ୍ଭୋଗୀ ହେବ ।

**ସୂତ୍ର:—ଉଚ୍ଚେତସ୍ମିନ୍ନୁତ୍ତମକୁଳାଦ୍ଦାର ଲାଭଃ । ୯ । ନୀଚେ ବିପର୍ଯ୍ୟୟଃ । ୧୦ । ଶୁଭ ସମ୍ବନ୍ଧାତ୍ ସୁନ୍ଦରୀ । ୧୧ ।**

ତଥା ଚ ପରାଶରଃ

"ଉପପଦେଶୋପି ତୁଙ୍ଗର୍କ୍ଷେ କଳତ୍ର୍ୟାଖ୍ୟେ ଦାରିକାରକେ ।
ଉତ୍ତମକୁଳାଦ୍ଦାର ଲାଭୋ ନୀଚସ୍ଥେଽପି ବିପର୍ଯ୍ୟୟଃ ।
ଶୁଭ ସମ୍ବନ୍ଧଯୁକ୍ ଦୃଷ୍ଟେ ଉପପଦେ ଦାରକାରକେ ।
ସୁନ୍ଦରୀଂଲଭତେ ଭାର୍ଯ୍ୟାଂ ଭବ୍ୟାଂରୂପବତୀଂ ଦ୍ୱିଜ ।"

ଅର୍ଥ:—ଉପପଦେଶ ବା ସ୍ତ୍ରୀକାରକ ଗ୍ରହ ଉଚ୍ଚସ୍ଥ ହେଲେ ଉତ୍ତମ କୁଳରୁ ସ୍ତ୍ରୀ ଲଭନ୍ତି । ନୀଚ ଗ୍ରହ ଦ୍ୱାରା ନୀଚ ବଂଶରୁ ସ୍ତ୍ରୀ ଲାଭ କଳ୍ପନା କରିବେ । ଉପପଦେଶ ବା ସ୍ତ୍ରୀକାରକ ଗ୍ରହଠାରେ ଶୁଭଗ୍ରହର ବର୍ଗାଦି ସମ୍ବନ୍ଧ ରହିଥିଲେ ମନୁଷ୍ୟ ସୁନ୍ଦରୀ ସ୍ତ୍ରୀ ଲାଭକରେ ।

**ସୂତ୍ର:—ରାହୁଶନିଭ୍ୟାମପବାଦାତ୍ ତ୍ୟାଗୋ ନାଶୋ ବା ।୧୨।**

ଅର୍ଥ:—ଉପପଦଲଗ୍ନ ଓ ତାର ଅଧିପତି ଏବଂ ସ୍ତ୍ରୀକାରକ ଗ୍ରହଠାରେ ଶନି ରାହୁର ସମ୍ବନ୍ଧ (ଯୋଗ ଦୃଷ୍ଟି) ଥିଲେ ଲୋକାପବାଦ ଦ୍ୱାରା ସ୍ତ୍ରୀ ନାଶଘଟେ ବା ସ୍ତ୍ରୀକୁ ପରିତ୍ୟାଗ କରେ । ପରାଶର ମଧ୍ୟ କହିଛନ୍ତି ଯଥା:—

"ସମ୍ବନ୍ଧେ ଶନିରାହୁଭ୍ୟାମୁପପଦେ ଚ ଶନିର୍ଦ୍ୱିଜ ।
ନିର୍ଦ୍ଧାର କାରକେ ବାପି ଶନିରାହୁ ଯୁତେ କ୍ଷିତେ ।
ଅଥବାଦଯୁତୋ ବପ୍ର ଭାର୍ଯ୍ୟା ସହିତୋ ନର ଃ ।
ସ୍ତ୍ରୀ ବିନାଶୋ ଭବେ ନୂନଂ ତଥା ସ୍ତ୍ରୀ ପରିତ୍ୟାଗ ବାନ୍"

ସ୍ତ୍ରୀ ରୋଗ ବିଚାର

## ସୂତ୍ର:-ଶୁକ୍ରକେତୁଭ୍ୟାଂ ରକ୍ତପ୍ରଦରଃ ।୧୩।

ତଥାଚ ପରାଶରଃ---

"ଉପପଦେ ଚ ସଂଯୁକ୍ତୌ ଶିଖିଶୁକ୍ରୌ ଦ୍ୱିଜୋତ୍ତମ ।
ରକ୍ତ-ପ୍ରଦର ରୋଗାର୍ତ୍ତା ଜାୟତେ ତସ୍ୟଭାମିନୀ" ।

ଅର୍ଥ:---ଉପପଦ ଲଗ୍ନରେ ଶୁକ୍ର କେତୁ ଯୁକ୍ତ ହୋଇଥିଲେ ଜାତକର ସ୍ତ୍ରୀର ରକ୍ତପ୍ରଦର ରୋଗ ହୁଏ ।

## ସୂତ୍ର-ଅସ୍ଥିସ୍ରାବୋ ବୁଧ କେତୁଭ୍ୟା ମ୍ ।୧୪।

ପରାଶରେଣାପି---

"ଉପପଦାଦଷ୍ଟୁ ସଂଯୋଗେ ବୁଧ କେତ୍ୱୋର୍ଦ୍ଵିଜୋତ୍ତମ ।
ଅସ୍ଥିସ୍ରାବଯୁତା ବାଳା ଗୃହେ ତସ୍ୟ ନ ସଂଶୟଃ ।

ଅର୍ଥ:---ଉପପଦସ୍ଥ ବୁଧ କେତୁ ଦ୍ୱାରା ସ୍ତ୍ରୀ ଅସ୍ଥିସ୍ରାବ ରୋଗରେ ପୀଡ଼ିତା ହୁଏ ।

## ସୂତ୍ର-ଶନି ରବି ରାହୁଭିରସ୍ଥିଜ୍ୱରଃ ।୧୫।

ତଥାଚ:---

"ରବି ରାହୁସ୍ତଥା ପଙ୍ଗୁରୁପପଦେ ଯୋଗ କାରକଃ ।
ଅସ୍ଥିଜ୍ୱରବତୀ ବାଲା ତପ୍ତାଂଗୀଚ ଦିବା-ନିଶମ୍"

ଅର୍ଥ:---ଉପପଦରେ ଶନି, ରାହୁ ଓ ରବିର ସମ୍ବନ୍ଧ ଥିଲେ ସ୍ତ୍ରୀର ଅସ୍ଥିଗତ ଜ୍ୱର ହୁଏ ।

**ସୂତ୍ର:-ବୁଧ କେତୁଭ୍ୟାଂ ସ୍ଥୌଲ୍ୟମ୍ ।୧୬।**

ତଥା:---

"ଉପପଦେ ବୁଧକେତୁଭ୍ୟାଂ ଯୋଗସମ୍ବନ୍ଧକେ ଦ୍ୱିଜ ।

ସ୍ଥୂଲାଙ୍ଗୀ ଗୃହିଣୀ ତସ୍ୟ ଜାୟନ୍ତେ ନାତ୍ର ସଂଶୟଃ ।

ଅର୍ଥ:---ଉପପଦରେ ବୁଧ କେତୁର ଯୋଗାଦି ସମ୍ବନ୍ଧ ରହିଲେ ସ୍ତ୍ରୀରଶରୀର ସ୍ଥୂଳ (ମୋଟା) ହୁଏ ।

**ସୂତ୍ର:-ବୁଧକ୍ଷେତ୍ରେ ମନ୍ଦାରାଭ୍ୟାଂ ନାସିକା ରୋଗଃ ।୧୭। କୁଜକ୍ଷେତ୍ରେ ଚ ।୧୮।**

ତଥା:---

"ଉପପଦେ ବୁଧକ୍ଷେତ୍ରେ ଭୌମକ୍ଷେ ଗୃଥବା ଦ୍ୱିଜ ।

ମନ୍ଦାରୌ ସଂସ୍ଥିତୌ ତତ୍ର ଘ୍ରାଣ ରୋଗାର୍ତ୍ତ ପିତ୍ରସୁକ୍ ।"

ଅର୍ଥ:---ମିଥୁନ, କନ୍ୟା ବା ମେଷ ଓ ବୃଶ୍ଚିକରେ ଉପପଦ ଲଗ୍ନ-ହୋଇ ସେଥିରେ ଶନି ମଙ୍ଗଳ ଯୋଗ ହେଲେ ସ୍ତ୍ରୀର ନାସିକା ରୋଗ (ପିନାଶ) ହୁଏ ।

**ସୂତ୍ର:-ଗୁରୁ ଶନିଭ୍ୟାଂ କର୍ଣ୍ଣରୋଗୋ ନରାହକାଚ ।୧୯।**

ଅର୍ଥ:---ବୃହସ୍ପତି, ଶନି ଉପପଦ ଲଗ୍ନସ୍ଥ ହେଲେ କର୍ଣ୍ଣ ରୋଗ ବା ଚକ୍ଷୁରୋଗ ହୁଏ । କିନ୍ତୁ ପରାଶର ମତରେ ବୁଧ ମଙ୍ଗଳ ଅନ୍ୟ କ୍ଷେତ୍ରସ୍ଥ ହୋଇ ଶନି ଉପପଦସ୍ଥ ହେଲେ ସ୍ତ୍ରୀର କର୍ଣ୍ଣ ରୋଗ ଓ ନେତ୍ର ରୋଗ ହୁଏ । ଯଥା:---

"ସୌମ୍ୟାରୌ ଶୂନ୍ୟ କ୍ଷେତ୍ରେ ବା ଉପପଦଶେ୍ୟ ଶନ୍ଯୁତେ ।
କର୍ଣ୍ଣ ରୋଗବତୀ ବାଳା ନେତ୍ରରୋଗ ଯୁତା ତଥା ।"

**ସୂତ୍ର:-ଗୁରୁ ରାହୁଭ୍ୟାଂ ଦନ୍ତ ରୋଗଃ ।୨୦।**

ଅର୍ଥ:---ଉପପଦରେ ବୃହସ୍ପତି ଓ ରାହୁ ଯୋଗ ହେଲେ ଦନ୍ତ ରୋଗୀ ହୁଏ ।

ପରାଶର ମତରେ ମଧ୍ୟ

"ଗୁରୁ ସୌମ୍ୟୌ ଶୂନ୍ୟକ୍ଷେତ୍ରେ ଉପପଦେ ଦ୍ୱିଜୋତ୍ତମ ।
ଯୋଗେ ସ୍ୱର୍ଭାନୁ ଦେବେଜ୍ୟୌ ଦଂତାର୍ତ୍ତା ଗୃହିଣୀ ଭବେତ୍"

**ସୂତ୍ର:-ଶନିରାହୁଭ୍ୟାଂ କନ୍ୟା ତୁଲୟୋଃ ପଂଗୁର୍ବାତ ରୋଗୋ ବା ।୨୧। ଶୁଭ ଦୃଗ୍ ଯୋଗାନ୍ନ ।୨୨।**

ତଥା ଚ ପରାଶରଃ:—

"ଉପପଦେ ତୁ କନ୍ୟାସ୍ଥେ ଅନ୍ୟର୍କ୍ଷେଽପି ତଥାଦ୍ୱିଜ ।
ଶନି ସ୍ୱର୍ଭାନୁ ଯୋଗଶ୍ଚ ପଂଗ୍ୱଂଗୀ ତସ୍ୟ ଭାମିନୀ ।"

ଅର୍ଥ:---କନ୍ୟା ବା ତୁଳରାଶିରେ ଉପପଦ ଲଗ୍ନ ହୋଇ ସେଥିରେ ଶନି ରାହୁ ଯୁକ୍ତ ହୋଇଥିଲେ ସ୍ତ୍ରୀ ପଂଗୁ ବା ବାତରୋଗୀ ହୁଏ । ଉକ୍ତ ଯୋଗମାନଙ୍କରେ ଶୁଭ ଗ୍ରହର ସମ୍ବନ୍ଧ ଥିଲେ ଅଶୁଭ ଫଳ ନଷ୍ଟ ହୋଇଯାଏ ।

ବି: ଦ୍ର:---ଉକ୍ତ ଗ୍ରନ୍ଥ ନିୟମାନୁସାରେ କନ୍ୟାର ଅର୍ଥ କୁମ୍ଭ ଓ ତୁଳର ଅର୍ଥ ମୀନ ହେଉଛି । ପୁଣି ଏ ଦୁହେଁ ଅପଦ (ପଦହୀନ) ରାଶି ଅଟନ୍ତି । ତେଣୁ କୁମ୍ଭ ଓ ମୀନ

ରାଶିରେ ଉପପଦ ଲଗ୍ନ ହୋଇ ସେଥିରେ ଶନି ରାହୁ ଯୁକ୍ତ ହୋଇଲେ ପଂଗୁ ବା ବାତ ରୋଗ ହେବାର ସମ୍ଭାବନା ।

**ସୂତ୍ର:—ସପ୍ତମାଂଶ ଗ୍ରହେଭ୍ୟ ଶ୍ଚୈବମ୍ ।୨୩।**

ଅର୍ଥ:---ଜନ୍ମ ଲଗ୍ନ ବା ଉପପଦ ଲଗ୍ନର ସପ୍ତମ ଭାବାଧିପତିର ନବାଂଶରୁ ମଧ୍ୟ ଫଳ ବିଚାର କରାଯିବ । ତଥାଚ:---

"ଲଗ୍ନା ଦୁପପଦାଦ୍‌ବାପି ଯୋ ରାଶିଃ ସପ୍ତମୋଦ୍ବିଜ ।
ତନ୍ନବାଂଶା ରାଶଯୋଂଶାଃ ସ୍ୱସପ୍ତମତ ଦଂଶକାଃ ।"

ନିଃସନ୍ତାନ ଯୋଗ—

**ସୂତ୍ର:—ବୁଧ ଶୁକ୍ରେଷ୍ବନ ପତ୍ୟଃ ପୁତ୍ରେଷୁ ।୨୪।**

ଅର୍ଥ:---ଉପପଦ ବା ଜନ୍ମଲଗ୍ନଙ୍କ ସପ୍ତମାଂଶ ଗ୍ରହର ନବମରେ ବୁଧ, ଶନି ଓ ଶୁକ୍ର ଥିଲେ ନିଃସନ୍ତାନ କରାଏ ।

ସେହିପରି ପରାଶର:---

"ଶନି ଶୁକ୍ରସ୍ତଥା ବୁଦ୍ଧଃ ସପ୍ତମାଂଶ ଗ୍ରହେଷ୍ବ ଚ ।
ନିକଯୋଗ କୃତେ ବିପ୍ର ଅପତ୍ୟ ରହିତୋ ନରଃ ।"

ବହୁ ପୁତ୍ରଦା ଯୋଗ:---

**ସୂତ୍ର:—ରବି ରାହୁ ଗୁରୁଭିର୍ବହୁପୁତ୍ରଃ ।୨୫।**
**ଚନ୍ଦ୍ରେଣୈକ ପୁତ୍ରଃ ।୨୬। ମିଶ୍ରେ ବିଳମ୍ବାତ୍ ପୁତ୍ର ।୨୭।**

ଅର୍ଥ:---ଜନ୍ମ ବା ଉପପଦଲଗ୍ନର ସପ୍ତମାଂଶ ଗ୍ରହର ନବମରେ ରବି, ରାହୁ ଓ ବୃହସ୍ପତି ଯୁକ୍ତହେଲେ ବହୁ ପୁତ୍ର ଲାଭ ହୁଏ ।
ସେହି ସପ୍ତମାଂଶ-ଗ୍ରହର-ନବମସ୍ଥ ଚନ୍ଦ୍ର ଏକ ମାତ୍ର ପୁତ୍ର

କରାଏ । ପୁଣି ସେଠାରେ ପୁତ୍ରକାରକ ଓ ଅନ୍ନପତ୍ୟ କାରକ ଗ୍ରହମାନେ ଯୁକ୍ତ ହେଲେ ବଳମ୍ବରେ ପୁତ୍ର ଲଭ ହୁଏ । (କିନ୍ତୁ ଏଠାରେ ସେ ଦୁହିଙ୍କର ବଳ ବିଗ୍ଭର କରି ଫଳ ଚିନ୍ତା କରିବେ) । ପରାଶର ମତରେ---ପଦ, ଉପପଦ ଲଗ୍ନ ଓ ପୁତ୍ରକାରକର ପଞ୍ଚମରେ ରବି, ରାହୁ ବୃହସ୍ପତି ଥିଲେ ବହୁ ପୁତ୍ର ଲଭ ହୁଏ । ଯଥା:---

"ପଦୋପପଦ ଲଗ୍ନେଷୁ ପୁତ୍ରକାରକକେନ୍ଦ୍ରିକ ।
ପଞ୍ଚମସ୍ଥେ ଗୁରୌ ଭାନୌତଥ ସଦ୍‌ଭାନୁ ଯୋଗକୃତ୍ ।
ବହୁ ପୁତ୍ରୋ ଭବେନ୍ନୂନଂ ପ୍ରତାପୀ ବଳବୀର୍ଯ୍ୟ ଯୁକ୍ ।
ପ୍ରଚଣ୍ଡ ବିଜୟୀ ବିପ୍ର ସ୍ତେପୂର୍ଣଗ୍ରହ କାରକଃ ।
ଉକ୍ତ ସ୍ଥାନେ ନିଶାନାଥେ ଏକ ପୁତ୍ରୋ ଭବେ ଦ୍ୱିଜ ।
ଉକ୍ତସ୍ଥାନେ ଶୁଭେ ପାପେ ପୁତ୍ର ସୌଖ୍ୟଂ ବିଳମ୍ବିତମ୍ ।"

**ସୂତ୍ର---କୁଜ ଶନିଭ୍ୟାଂ ଦତ୍ତପୁତ୍ରଃ ।୨୮। ଓଜେ ବହୁପୁତ୍ରଃ ।୨୯। ଯୁଗ୍ମେଽଲ୍ପ ପ୍ରଜଃ ।୩୦।**

ଅର୍ଥ:---ଜନ୍ମଲଗ୍ନ ବା ଉପପଦ ଲଗ୍ନର ସପ୍ତମାଂଶ ଗ୍ରହର ନବମରେ ଶନି ଓ ମଙ୍ଗଳ ଥିଲେ ଦତ୍ତପୁତ୍ର କରେ । ଏହି ସ୍ଥାନ ଯଦି ବିଷମ ରାଶି ହୋଇଥାଏ ତେବେ ବହୁ ପୁତ୍ର ହୁଏ । ସମରାଶି ହେଲେ ଅଳ୍ପ ପୁତ୍ର ହୁଏ ।

**ସୂତ୍ର---ଗ୍ରହକ୍ରମାତ୍ କୁକ୍ଷିତଦୀଶ ପଞ୍ଚମଂଶ ଗ୍ରହେଭ୍ୟଃ-ଚୈବମ୍ ।୩୧।**

ଅର୍ଥ:---ଯେପରି ଲଗ୍ନଠାରୁ କର୍ମରେ ଭାବମାନଙ୍କର ଫଳ ବିଚାର କରାଯାଇଛି, ସେହିପରି (କୁଷି) ଉପପଦାଧିପତି ଓ ତାର ପଞ୍ଚମ ଓ ପଞ୍ଚମାଧିପତିର ନବାଂଶ ଗ୍ରହରୁ ମଧ ସେହି ଭାବର ଫଳ ବିଚାର କରାଯିବ ।

ପରାଶର ମଧ କହିଛନ୍ତି:—

"ଗ୍ରହକର୍ମାତ୍ କୁଷିଫଙ୍କେ ତଦୀଶଂ ପଞ୍ଚମାଂଶତଃ ।"

ସିଂହାଧୀଶେ ରବୌବିପ୍ର ସ୍ୱଳ୍ପାପତ୍ୟୋଭବେନ୍ନରଃ ।

ଉପପଦେସିଂହଲଗ୍ନେ କ୍ଷଣାନାଥ ଯୁତେ ସ୍ଥିତଃ ।

ସ୍ୱଳ୍ପପ୍ରଜୋଭବେଦ୍ ବିପ୍ର ତଥା କନ୍ୟା ପ୍ରଜୋଭବେତ୍ ।

ସୁତଭାବାନ୍ନବାଂଶାଇ ତଥାପି ପୁତ୍ର କାରକାତ୍ ।

ନଦ୍ବାବିଂଶାଂଶ କୁଣ୍ଡଲ୍ୟାଂ ପଞ୍ଚମାଂଶାତ୍ତଦା ଦ୍ୱିଜ ।

ତଦୀଶାଚ୍ଚିନ୍ତୟେଦ୍ ବିପ୍ର ସ୍ପୃତତେର୍ଯୋଗମୁତ୍ତମମ୍ ।

ଏବଂ ସର୍ବ ପ୍ରକାରେଣ ଚିନ୍ତନୀୟଃ ସଦାବୁଧୈଃ ।"

## ଭ୍ରାତୃଶୁଭାଶୁଭ ବିଚାର

## ସୂତ୍ର:-ଭ୍ରାତୃଭ୍ୟାଂ ଶନିରାହୁଭ୍ୟାଂ- ଭ୍ରାତୃନାଶଃ । ୩୨ ।

ଅର୍ଥ:—କାରକଲଗ୍ନ ବା ଉପପଦର ଓ ତାର ଅଧିପତି ନବାଂଶର ତୃତୀୟ ଏକାଦଶରେ ଶନିଂ ରାହୁଥିଲେ ଭ୍ରାତୃନାଶ ହୁଏ । ଅର୍ଥାତ୍ ତୃତୀୟରେ ଶନି ରାହୁ ଥିଲେ କନିଷ୍ଠ ଭ୍ରାତା ଓ ଏକାଦଶରେ ଥିଲେ ଜ୍ୟେଷ୍ଠ ଭ୍ରାତା ନାଶ ହୁଏ ।

ସେହିପରି ପରାଶର ମଧ୍ୟ:—

"ଉପପଦେ ଶନିରାହୁଭ୍ୟାଂ ତୃତୀୟେ ଭ୍ରାତୃନାଶ ଦୌ ।
ଏକାଦଶେ ଜ୍ୟେଷ୍ଠଭ୍ରାତୃସ୍ତୃତୀୟେ କନିଷ୍ଠକମ୍ ।"

**ସୂତ୍ର:-ଶୁକ୍ରେଣ ବ୍ୟବହିତ ଗର୍ଭନାଶଃ । ୩୩ ।**

ଅର୍ଥ:—ସେହିପରି ଉପପଦ ବା ଉପପଦେଶର ନବାଂଶର ତୃତୀୟ ଏକାଦଶସ୍ଥ ଶୁକ୍ର ଦ୍ୱାରା ବ୍ୟବହିତ (ଅଙ୍ଗଯୁକ୍ତ ଭାବରେ ଅବସ୍ଥିତ) ଗର୍ଭନାଶ ହୁଏ । ସେହିପରି:—

"ଉପପଦୈକାଦଶସ୍ଥାନେ ତୃତୀୟେ ଦାନବେଜ୍ୟକେ ।
ବ୍ୟବହିତାର୍ଥନାଶଃ ସ୍ୟାଦ୍ୟଥା ସମ୍ଭବତ ଦ୍ୱିଜ ।"

**ସୂତ୍ର:-ପିତୃଭାବେ ଶୁକ୍ର ଦୃଷ୍ଟେପି । ୩୪ ।**

ଅର୍ଥ:–ଲଗ୍ନର ଅଷ୍ଟମକୁ ଶୁକ୍ର ଦେଖିଲେ ମଧ୍ୟ ସେହିପରି ବ୍ୟବହିତ (ଆଚ୍ଛାଦିତ) ଗର୍ଭନାଶ ହୁଏ । ସେହିପରି

"ଲଗ୍ନେବାପି ଲଘେବାପି ଦୈତ୍ୟାଗ୍ରଣ୍ୟ ଯୁତେକ୍ଷିତେ ।
ବ୍ୟବହିତାଙ୍ଗ ନାଶଃ ସ୍ୟାନ୍ନିର୍ବିଶଙ୍କଂ ଦ୍ୱିଜୋତ୍ତମ ।"

**ସୂତ୍ର:-କୁଜଗୁରୁଚନ୍ଦ୍ରବୁଧୈର୍ବହୁଭ୍ରାତରଃ । ୩୫ ।**

ତଥା ପରାଶରଶ୍ଚ—

"ତୃତୀୟେକାଦଶେ ବିପ୍ର କୁଜେଜ୍ୟ ବୁଧଚନ୍ଦ୍ରମାଃ ।
ଭ୍ରାତୃବାହୁଲତା ବାଚ୍ୟା ପ୍ରତାପୀ ବଲବତ୍ତରଃ ।"

ଲଗ୍ନ ବା ଉପପଦର ଏବଂ ସେହି ନବାଂଶର ତୃତୀୟ ଓ ଏକାଦଶରେ ମଙ୍ଗଳ, ବୃହସ୍ପତି, ଚନ୍ଦ୍ର ଓ ବୁଧ ଥିଲେ ବହୁଭ୍ରାତୃ ଯୋଗ ହୁଏ ।

**ସୂତ୍ର:-ଶନ୍ୟାରଭ୍ୟାଂ ଦୃଷ୍ଟେୟଥା ସ୍ୱଂ-**
**ଭ୍ରାତୃନାଶଃ । ୩୬ ।**

ଅର୍ଥ:—ସେହି ତୃତୀୟ ଓ ଏକାଦଶ ସ୍ଥାନରେ ଶନି ମଙ୍ଗଳର ଦୃଷ୍ଟି-
ପଡ଼ୁଥିଲେ କ୍ରମରେ କନିଷ୍ଠ ଓ ଜ୍ୟେଷ୍ଠ ଭାଇର ମୃତ୍ୟୁହୁଏ ।

**ସୂତ୍ର:-ଶନିନା ସ୍ୱମାତ୍ରଶେଷଶ୍ଚ । ୩୭ ।**
**କେତୌ ଭଗିନୀ ବାହୁଲ୍ୟମ୍ । ୩୮ ।**

ଅର୍ଥ:—ସେହି ତୃତୀୟ ଏକାଦଶରେ ଶନିଥିଲେ ବା ଦେଖୁଥିଲେ
ନିଜେ କେବଳ ରହନ୍ତେ, ବାକି ତାର ସମସ୍ତଭାଇ ନଷ୍ଟ
ହୁଅନ୍ତି । ସେହି ଏକାଦଶ ଓ ତୃତୀୟସ୍ଥ କେତୁ ବହୁ-
ଭଗିନୀ ଯୁକ୍ତ କରଏ ।

ସେହିପରି ମହର୍ଷି ପରାଶର:---

"ଶନେରଙ୍ଗ୍ୟୁତେ ଦୃଷ୍ଟେ ତୃତୀୟୈକାଦଶେଦ୍ୱିଜ ।
କନିଷ୍ଠ ଜ୍ୟେଷ୍ଠୟୋର୍ନାଶଂ ଭନିଷ୍ଟେ ଭନାଭାବହୁତ ।
ଭ୍ରାତୃସ୍ଥାନେ ଯୁତେସୌରୌ ଲଭନ୍ତେବା ତୃତୀୟଗେ ।
ସ୍ୱସ୍ୟମାତା ସ୍ଥିତିମତୀ ଅନ୍ୟାନଶ୍ୟତ ବୈଦ୍ୱିଜ ।
ତୃତୀୟେୈକାଦଶେ କେତୁର୍ବାହୁଲ୍ୟଂ ଭଗିନୀ ସୁଖମ୍ ।
ଭ୍ରାତୃ ସ୍ୱଳ୍ପ ସୁଖଂତସ୍ୟ ନିର୍ବିଶଂକଂ ଦ୍ୱିଜୋତ୍ତମ ।"

**ସୂତ୍ର:-ଲଗ୍ନେଶାଦ୍ଭ୍ରଗେୟରହୋର୍ଦଂଷ୍ଟ୍ରାବାନ୍।୩୯।**
**କେତୌସ୍ତବ୍ଧବାକ୍ । ୪୦ ।**

**ମନ୍ଦେ କୁରୂପଃ । ୪୧ । ସ୍ୱାଂଶବଶାତ୍-**
**ଗୌରନୀଳ ପୀତାଦିବର୍ଣ୍ଣାଃ । ୪୨ ।**
**ଅମାତ୍ୟାନୁଚରା ଦେବତା ଭକ୍ତଃ । ୪୩ ।**

ଅର୍ଥ:---ଉପପଦ ବା ଜନ୍ମଲଗ୍ନ-ସପ୍ତମେଶର ଦ୍ୱିତୀୟରେ ରାହୁଥିଲେ ଦଂଷ୍ଟ୍ରାବାନ୍ (ବଡ଼ଦାନ୍ତ) ହୁଏ । ଯଥା ପରାଶରଃ:—

"ସପ୍ତମେଶାଦ୍ଦ୍ୱିତୀୟେଚ ରାହୁସ୍ଥେ ମୂକ ଏବଚ ।
ଖଳସ୍ଥିତୌ ଯଦା ବପ୍ର ଦଂତା ନାମଧିକଂ ଭବେତ୍ ।"

ଉକ୍ତ ସ୍ଥାନରେ କେତୁଥିଲେ ସ୍ତବ୍ଧବାକ୍ (ଖନା) ହୁଏ । ସେହିପରି ପରାଶର ମଧ୍ୟ କହିଛନ୍ତି ---

"ଶିଖିନା ବାଡ ବ୍ୟାଧିସ୍ୟାଦ୍ୟଦ୍ୱା ସ୍ୟାଦସ୍ଫୁଟୋକ୍ତିମାନ୍ ।
ତଦ ନାନା ଗ୍ରହୈ ର୍ଯୋଗେ ମିଶ୍ରଂ ଫଳମୁଦାହୃତମ୍ ।"

ସେଠାରେ ଶନିଥିଲେ କୁରୂପ ହେବାକୁ ପଡ଼େ । ଅମାତ୍ୟକାରକର ବର୍ଣ୍ଣାନୁସାରେ ମନୁଷ୍ୟର ଗୌରବର୍ଣ୍ଣାଦି ହୁଏ । ଭ୍ରାତୃକାରକଠାରୁ ପୂର୍ବପର ଦେବତା ଭକ୍ତ ବିଚାର କରିବେ ।

**ସୂତ୍ର:-ସ୍ୱାଂଶେକେବଲ ପାପ ସମ୍ବନ୍ଧେ**
**ପରଜାତଃ । ୪୪ । ନାତ୍ର ପାପାତ୍ । ୪୫ ।**
**ଶନିରାହୁଭ୍ୟାଂ ପ୍ରସିଦ୍ଧିଃ । ୪୬ ।**
**ଗୋପନମନ୍ୟେଭ୍ୟଃ । ୪୭ ।**
**ଶୁଭବର୍ଗେଽପବାଦମାତ୍ରମ୍ । ୪୮ ।**
**ଦ୍ୱିଗ୍ରହେ କୁଲମୁଖ୍ୟଃ । ୪୯ ।**

ଅର୍ଥ:—ଅତ୍ମକାରକାଂଶରେ କେବଳ ପାପ ଗ୍ରହମାନଙ୍କର ସମ୍ବନ୍ଧ (ଦୃଷ୍ଟି, ଯୋଗ ପ୍ରଭୃତ) ଥିଲେ ପରଜାତ (ଜାରଜ) ହୋଇଥାଏ । କିନ୍ତୁ ଅତ୍ମକାରକ ଗ୍ରହ ଯଦି ପାପ ହୋଇଥାଏ ତେବେ ପରଜାତ ହୁଏ ନାହିଁ ।

ସେହିପରି ପରାଶର ମଧ୍ୟ:

"କାରକାଂଶେ ପାପଖଗୈଃ ପାପାଂଶେ ପାଦଯୋଗ୍ଯକୃତ୍ତ ।
ପାପବର୍ଗେ ଶୁଭୈର୍ହୀନେ ଜାୟତେ ପରଜାତଜାନ୍ ।
କାରକାଂଶେ ଭବେତ୍ତ ପାପୋ ନଜ୍ଜେୟଃ ପରଜାତକଃ ।
ଅନ୍ୟେଷାଂ ପାପଖେଟାନାଂ ଯୋଗଂ ଘଟେତ୍ବମାପ୍ନୁୟାତ୍ତ ।"

କାରକାଂଶରେ ଶନି ଗ୍ରହର ସମ୍ବନ୍ଧ (ଷଡ଼୍ବର୍ଗ ପ୍ରଭୃତ) ହୋଇଥିଲେ ଜାରଜ ବୋଲି ଗୁରୁଅତେ ବ୍ୟାପିଯାଏ । କିନ୍ତୁ ଅନ୍ୟ ପାପଗ୍ରହର ସମ୍ବନ୍ଧ ଥିଲେ ତାହା ଗୁପ୍ତ ହୋଇ ରହିଥାଏ । ଆତ୍ମକାରକ ଲଗ୍ନ ଶୁଭ ଗ୍ରହର ରାଶିରେ ରହି ପାପ ଗ୍ରହର ଦୃଷ୍ଟି, ଯୋଗ ପ୍ରଭୃତ ସମ୍ବନ୍ଧ ଥିଲେ ପରଜାତ ବୋଲି ମିଥ୍ୟାପବାଦ ହୁଏ । କାରକ ଲଗ୍ନରେ ଦୁଇଟି ମାତ୍ର ଗ୍ରହଥିଲେ ଜାତକ ନିଜ କୁଳର ମୁଖ୍ୟ (ପ୍ରଧାନ) ହୁଏ ।

## ଅଥ ଦ୍ୱିତୀୟାଧ୍ୟାୟସ୍ୟ ପ୍ରଥମ ପାଦଃ ।

## ଅଥାୟୁର୍ଦାୟାଧ୍ୟାୟଃ

ଆୟୁଃବିଚାର

**ସୂତ୍ର:—ଆୟୁଃ ପିତୃଦିନେଶାଭ୍ୟାମ୍ । ୧ ।**

ଅର୍ଥ:---(ପିତୃ) ଲଗ୍ନେଶ ଓ ( ଦିନେଶ ) ଅଷ୍ଟମେଶଠାରୁ ଆୟୁସ୍ଥିର କରାଯାଏ ।

ଦୀର୍ଘାୟୁ ଯୋଗ ବିଚାର

**ସୂତ୍ର:-ପ୍ରଥମୟୋରୁତ୍ତରୟୋର୍ବା ଦୀର୍ଘମ୍ । ୨ ।**

ଅର୍ଥ:---ଲଗ୍ନାଧିପତି ଓ ଅଷ୍ଟମାଧିପତି ଉଭୟେ ଚରରାଶିସ୍ଥ ହେଲେ ବା ଏ ଦୁହିଁଙ୍କ ଭିତରୁ ଗୋଟିଏ ସ୍ଥିରରାଶିରେ ଅନ୍ୟଟି ଦ୍ୱାତ୍ମିକ ରାଶିରେ ଥିଲେ ଦୀର୍ଘାୟୁ ଯୋଗ ହୁଏ ।

ସେହିପରି ପରାଶର ମଧ୍ୟ

"ଚରରାଶୌ ସ୍ଥିତେ ଦ୍ୱୌଚ ଲଗ୍ନରନ୍ଧ୍ରାଧିପୌଯଦି ।
ପୂର୍ଣ୍ଣାୟୁର୍ଯୋଗୋ ବକ୍ତବ୍ୟୋ ଜୈମିନୀଙ୍କଂ ଦ୍ୱିଜୋତ୍ତମ !
ସ୍ଥିରର୍କ୍ଷେ ଲଗ୍ନନାଥୋହି ଲୟେଶେ ଦ୍ୱନ୍ଦଭେସ୍ଥିତେ ।
ତଦାୟୁଃ ପୂର୍ଣ୍ଣଯୋଗଶ୍ଚ ସମ୍ଭବେଦ୍ ଗଣିତାଗ୍ରଣୀଃ ।
ତନ୍ୱଧୀଶେ ସ୍ଥିତେଦ୍ୱନ୍ଦେ ସ୍ଥିରେସ୍ଥିତେ ଲୟାଧିପେ ।
ପୂର୍ଣ୍ଣାୟୁର୍ଯୋଗୋ ବକ୍ତବ୍ୟୋ ଜୈମିନୀଙ୍କଂ ଦ୍ୱିଜୋତ୍ତମ ।"

ପୁଣି ଜାତକତତ୍ତ୍ୱାନୁସାରେ

"सुते चन्द्रे गुरौ कोणे खे भौमे दीर्घायुः ।"

ପଞ୍ଚମରେ ଚନ୍ଦ୍ର, ନବମରେ ବୃହସ୍ପତି, ଦଶମରେ ମଙ୍ଗଳ ଥିଲେ ଦୀର୍ଘାୟୁ ହୁଏ।

"ରନ୍ଧ୍ରେଶେ ସ୍ୱର୍କ୍ଷେ ବା ମନ୍ଦେଷ୍ଟମେ ଦୀର୍ଘାୟୁଃ ।"

ଅଷ୍ଟମେଶ ଅଷ୍ଟମରେ ବା ଶନି ଅଷ୍ଟମରେ ଥିଲେ ଜାତକ ଦୀର୍ଘାୟୁ ହୁଏ ।

"ରନ୍ଧ୍ରାଙ୍ଗଖେଶାଃ କେନ୍ଦ୍ରକୋଣଲାଭଗାଦୀର୍ଘାୟୁଃ ।"

ଅଷ୍ଟମେଶ, ଲଗ୍ନେଶ ଓ ଦଶମେଶ କେନ୍ଦ୍ର କୋଣ ବା ଲାଭସ୍ଥ ହେଲେ ଦୀର୍ଘାୟୁ ଯୋଗ ହୁଏ ।

"ମନ୍ଦେସ୍ୱର୍କ୍ଷୋଚ୍ଚେ ଉପଚୟେ ବା ରନ୍ଧ୍ରପେ ମନ୍ଦେସୁତେଦୀର୍ଘାୟୁଃ ।"

ଶନି ନିଜଘରେ ବା ଉଚ୍ଚସ୍ଥ ହୋଇ ଉପଚୟ ( ୩, ୬, ୧୦, ୧୧ )ରେ ଥିଲେ ବା ଅଷ୍ଟମେଶ ଶନି ପଞ୍ଚମରେ ଥିଲେ ଦୀର୍ଘାୟୁ କରାଏ ।

"ରନ୍ଧ୍ରାଙ୍ଗପୌରନ୍ଧ୍ରେଲାଭେ ବା ଦୀର୍ଘାୟୁଃ"

ଲଗ୍ନାଧିପ ଓ ଅଷ୍ଟମାଧିପ ଅଷ୍ଟମରେ ବା ଏକାଦଶରେ ଥିଲେ ଦୀର୍ଘାୟୁ ହୁଏ ।

"ଷଷ୍ଠାନ୍ତ୍ୟପୌ ଲଗ୍ନେ ବା କର୍ମପେଡକନ୍ଦ୍ରେ ବା ଲଗ୍ନପେଦୀର୍ଘାୟୁଃ ।"

ଷଷ୍ଠ ଓ ବ୍ୟୟାଧିପ ଲଗ୍ନରେ ବା ଦଶମେଶ କେନ୍ଦ୍ରରେ ଏବଂ ଲଗ୍ନେଶ ମଧ୍ୟ କେନ୍ଦ୍ରରେ ଥିଲେ ଦୀର୍ଘାୟୁ ହୁଏ ।

"କର୍ମପେସ୍ଥିତେ ସ୍ୱୋଚ୍ଚେ ବା ରନ୍ଧ୍ରେ ଶେ କେନ୍ଦ୍ରେ ବା---
ଚତୁରସ୍ରେ ଶୁଭେଷୁ ଦୀର୍ଘାୟୁଃ ।"

ଦଶମେଶ ଉଚ୍ଚହୋଇ ପଞ୍ଚମସ୍ଥ ହେଲେ ବା ଅଷ୍ଟମେଶ କେନ୍ଦ୍ରରେ ଥିଲେ କିମ୍ବା ସମସ୍ତ ଶୁଭଗ୍ରହ କେନ୍ଦ୍ରସ୍ଥ ହେଲେ ମନୁଷ୍ୟର ଦୀର୍ଘାୟୁ ହୁଏ ।

"ସଦ୍ଭିର୍ନୈତ୍ରିକୈଃ ଖାଙ୍ଗାଷ୍ଟମପୈଃ କେନ୍ଦ୍ରେ ଦୀର୍ଘାୟୁଃ ।"

ସମସ୍ତ ପାପଗ୍ରହ ତୃତୀୟ ଏକାଦଶ ଓ ଷଷ୍ଠସ୍ଥ ହୋଇ ବାକି ସମସ୍ତ ଶୁଭଗ୍ରହ କେନ୍ଦ୍ର କୋଣରେ ଥିଲେ ଦୀର୍ଘାୟୁଯୋଗ ହୁଏ ।

"ଷଷ୍ଠାଷ୍ଟମ ସପ୍ତମେ ଶୁଭାଃ ପାପାସ୍ତ୍ରିଷଷ୍ଠାୟେ ଦୀର୍ଘାୟୁର୍ବା ।"

ଷଷ୍ଠାଷ୍ଟମ ଏବଂ ସପ୍ତମରେ ସମସ୍ତ ଶୁଭଗ୍ରହ ଥିଲେ ବା ପାପଗ୍ରହଗୁଡ଼ିକ ତୃତୀୟ, ଷଷ୍ଠ, ଏକାଦଶରେ ଥିଲେ ଦୀର୍ଘାୟୁଯୋଗ ହୁଏ ।

"ରନ୍ଧ୍ରେପେଙ୍ଗେ ଶୁକେଜ୍ୟଦୃଷ୍ଟେ ଦୀର୍ଘାୟୁଃ ।"

ଲଗ୍ନସ୍ଥ ଅଷ୍ଟମାଧିପତି ବୃହସ୍ପତି ଶୁକ୍ରଦ୍ୱାରା ଦୃଷ୍ଟ ହେଲେ ଦୀର୍ଘାୟୁ ହୁଏ ।

"ଶୁଭାଃ କେନ୍ଦ୍ରକୋଣେ ପାପାଃ ପାରବତେ ଦୀର୍ଘାୟୁଃ ।"

ଶୁଭଗ୍ରହମାନେ କେନ୍ଦ୍ର ଓ କୋଣସ୍ଥ ହୋଇ ପାପଗ୍ରହମାନେ ପାରାବତାଂଶରେ ଥିଲେ ଦୀର୍ଘାୟୁ ଯୋଗ ହୁଏ ।

ପରାଶରଙ୍କ ମତରେ ଦୀର୍ଘାୟୁ ଯୋଗ:---

"ଷଷ୍ଠେ ବ୍ୟୟେଽପି ଷଷ୍ଠେଶୋ ବ୍ୟୟାଧୀଶୋ ରପୌବ୍ୟୟେ ।
ଲଗ୍ନେଽଷ୍ଟମେ ସ୍ଥିତୌବାପି ଦୀର୍ଘମାୟୁଃ ପ୍ରଯୃଚ୍ଛତ ।"

ଅର୍ଥ:---ଷଷ୍ଠାଧିପତି ଷଷ୍ଠ ବା ବ୍ୟୟସ୍ଥ ହୋଇଥିଲେ ଏବଂ ବ୍ୟୟାଧିପତି ଷଷ୍ଠ ବା ବ୍ୟୟରେ ଥିଲେ ଅଥବା ଏ ଦୁହେଁ ଲଗ୍ନ ବା ଅଷ୍ଟମସ୍ଥ ହୋଇଥିଲେ ଦୀର୍ଘାୟୁ ଯୋଗ ହୁଏ ।

"ମନ୍ଦେନ ବା ଚିନ୍ତ୍ୟ ବଶେଷମାୟୁଃ-
ସ୍ୱକ୍ଷେତ୍ର ମିତ୍ରୋଚ୍ଚ ଗୃହସ୍ଥିତେ ନ ।
କର୍ମେଶ୍ୱରେଣାପି ବଚିନ୍ତ୍ୟ ମାୟୁଃ-
ଦୀର୍ଘଂ ସୁହୃତ୍-ସ୍ୱୋଚ୍ଚଯୁତେନ ତେନ ।"

ଅର୍ଥ:---ଶନି ବା କର୍ମାଧିପତି ସ୍ୱକ୍ଷେତ୍ରସ୍ଥ ହୋଇଥିଲେ ଅଥବା ମିତ୍ର ବା ଉଚ୍ଚଗୃହରେ ଥିଲେ ଦୀର୍ଘାୟୁ ଯୋଗ ହେବ ।

"ଲଗ୍ନାଷ୍ଟମପ କର୍ମେଶ-ମନ୍ଦାଃ କେନ୍ଦ୍ରେ ତ୍ରିକୋଣୟୋଃ ।
ଲାଭେବା ସଂସ୍ଥିତାଶ୍ଚେଦ୍ ବହୁଧାଶେଷୁଃ-ଦୀର୍ଘମାୟୁଷମ୍ ।

ଅର୍ଥ:---ଲଗ୍ନାଧିପ, ଅଷ୍ଟମାଧିପ,କର୍ମେଶ ଓ ଶନି କେନ୍ଦ୍ର ଓ ତ୍ରିକୋଣସ୍ଥ ହୋଇଥିଲେ ଅଥବା ଏମାନେ ଏକାଦଶରେ ଥିଲେ ଜାତକ ଦୀର୍ଘାୟୁ ହୁଏ ।

"ଲଗ୍ନେଶେ ସ୍ୱୋଚ୍ଚରାଶିସ୍ଥେ ଚନ୍ଦ୍ରେ ଲାଭ ସମନ୍ୱିତେ ।
ରନ୍ଧ୍ରସ୍ଥାନଗତେ ଜୀବେ ଦୀର୍ଘାୟୁଷଂ ନ ସଂଶୟଃ ।"

ଅର୍ଥ:---ଲଗ୍ନାଧିପତି ଉଚ୍ଚସ୍ଥ ଚନ୍ଦ୍ର ଲାଭଗତ ଏବଂ ବୃହସ୍ପତି ଅଷ୍ଟମସ୍ଥ ହେଲେ ଜାତକ ଦୀର୍ଘଜୀବୀ ହୁଏ ।

"କେନ୍ଦ୍ରାନ୍ୱିତେ ବଲଗ୍ନେଶେ ଗୁରୁଶୁକ୍ର ସମନ୍ୱିତେ ।
ତାଭ୍ୟାଂ ନିରୀକ୍ଷିତେ ବାପି ଦୀର୍ଘମାୟୁ ର୍ବିନିର୍ଦ୍ଦିଶେତ୍ ।"

ଅର୍ଥ:---ବୃହସ୍ପତି ଓ ଶୁକ୍ରସହ ଲଗ୍ନାଧିପତି କେନ୍ଦ୍ରସ୍ଥ ହୋଇଥିଲେ ଅଥବା କେନ୍ଦ୍ରସ୍ଥ ଲଗ୍ନାଧିପତିକୁ ବୃହସ୍ପତି ଓ ଶୁକ୍ର ଦେଖୁଥିଲେ ଦୀର୍ଘଜୀବୀ ହୁଏ ।

"ଚତୁରସ୍ତ୍ରେ ଶୁଭୈର୍ଯୁକ୍ତେ ଲଗ୍ନେଶେ ଶୁଭ ସଂଯୁତେ ।
ଗୁରୁଣା ଦୃଷ୍ଟି ସଂଯୋଗେ ପୂର୍ଣ୍ଣମାୟୁର୍ବିନିର୍ଦ୍ଦିଶେତ୍ ।"

ଅର୍ଥ:---ଶୁଭଗ୍ରହମାନେ ଲଗ୍ନ, ଚତୁର୍ଥ, ସପ୍ତମ ଓ ଦଶମରେ ଥିବେ ଏବଂ ଲଗ୍ନେଶ ଶୁଭଯୁକ୍ତ ହୋଇଥିବ, ପୁଣି ବୃହସ୍ପତି ଲଗ୍ନକୁ ଦେଖୁଥିଲେ ଦୀର୍ଘାୟୁଯୋଗ ହେବ ।

"ତ୍ରିଷଡ଼ାୟଗତାଃ ପାପାଃ ଶୁଭାଃ କେନ୍ଦ୍ରତ୍ରିକୋଣଗାଃ ।
ଲଗ୍ନେଶେ ବଳସଂପୂର୍ଣ୍ଣେ ପୂର୍ଣ୍ଣମାୟୁ ର୍ବିନିର୍ଦ୍ଦିଶେତ୍ ।"

ଅର୍ଥ:---ତୃତୀୟ, ଷଷ୍ଠ, ଏକାଦଶରେ ସମସ୍ତ ପାପଗ୍ରହ ଥିବେ ଏବଂ କେନ୍ଦ୍ର ଓ ତ୍ରିକୋଣରେ ସମସ୍ତ ଶୁଭଗ୍ରହଥାଇ ଲଗ୍ନାଧିପ ପୂର୍ଣ୍ଣବଳବାନ୍ ହୋଇଥିଲେ ଦୀର୍ଘାୟୁ ଯୋଗ ହେବ ।

"ସ୍ୱୋଚ୍ଚେରନ୍ଧ୍ରପତୌ ଚନ୍ଦ୍ରଯୁକ୍ତୁଦୟସ୍ଥ ଚ୍ଛିଦ୍ରାଧିପୌଷଷ୍ଠଗୌ ।
ବ୍ୟୟସଂସ୍ଥୌ ଯଦବା ସମେତ ମନୁଜୋ ଜାତସ୍ତି ବୟୁର୍ବଳଂ ।

ବ୍ୟାପାରେଶ୍ୱରନ୍ଧ୍ରରାଶିପତୟଃ କେନ୍ଦ୍ରତ୍ରିକୋଣଯୁଗା ।
ଦୀର୍ଘାୟୁର୍ବିବଲଃ ସଭ୍ରିନ୍ନୁତନୟୁ ଯଦ୍ୟଳ୍ପମାୟୁର୍ବଦେତ୍ ।”

ଅର୍ଥ:---ନିଧନାଧିପତି ଦ୍ୱିତୀୟରେ ଥିବ ଅଥବା ଲଗ୍ନାଧିପତି ଓ ନିଧନାଧିପତି ଷଷ୍ଠ ବା ବ୍ୟୟସ୍ଥ ହୋଇଥିବେ କିମ୍ବା କର୍ମାଧିପତି, ଲଗ୍ନାଧିପତି ଏବଂ ନିଧନାଧିପତି କେନ୍ଦ୍ର ବା କୋଣରେ ଥିଲେ ଜାତକର ଦୀର୍ଘାୟୁ ହୁଏ । କିନ୍ତୁ ଏମାନେ ବଳହୀନ ହୋଇ ଶନି ଯୁକ୍ତହୋଇ ଥିଲେ ଅଳ୍ପାୟୁ ହୁଏ ।

“ଲଗ୍ନାଦନ୍ତ୍ୟ ଗୃହାଧିପେ ବଳବତୀ ସ୍ୱର୍କ୍ଷେଶଗସ୍ତୁଃସୁଖୀ ।
ଲଗ୍ନେଶୋ ଯଦରନ୍ଧ୍ରପଷ୍ଟ ବଳିନୌ କେନ୍ଦ୍ରସ୍ଥିତୌଚେତ୍ତଥା ।
ଅଧାନୋଦନ୍ତୁ ରାଶିତୋଽଷ୍ଟମ ଗୃହାନ୍ନେଷୁରଣିଂ ଜନ୍ମଭଂ ।

ଶୁକ୍ରଜ୍ଞାମରବନ୍ଦଚେତ୍ କ୍ଷିତଯୁକ୍ତଂ ଯଦ୍ୟାୟୁରାରୋଗ୍ୟଭାକ୍ ।

ଅର୍ଥ:---ବଳବାନ୍ ବ୍ୟୟାଧିପ ବ୍ୟୟସ୍ଥ ହୋଇଥିଲେ ଏବଂ ଲଗ୍ନ ଓ ଅଷ୍ଟମାଧିପତି ବଳବାନ୍ ହୋଇ କେନ୍ଦ୍ରସ୍ଥ ହୋଇଥିଲେ, ପୁଣି ଆଧାନଲଗ୍ନ ଅଷ୍ଟମର ଦଶମ ଜନ୍ମ ରାଶିହୋଇ ସେଥିରେ ଶୁକ୍ର, ବୁଧ ଓ ବୃହସ୍ପତିର ଦୃଷ୍ଟି ବା ଯୋଗ ହୋଇଥିଲେ ଦୀର୍ଘାୟୁ ହେବ ।

“ରନ୍ଧ୍ରାଧିପେ ପାପଗୃହୋପଯାତେ ।
ଦୁଃସ୍ଥାନଗେ ପାପଯୁତେଽଳ୍ପମାୟୁଃ ।

ଶୁଭାନ୍ବିତେ ଶୋଭନରାଶିଯୁକ୍ତେ ---

ଶୁଭେକ୍ଷିତେ ରନ୍ଧ୍ରଗତେ ଚିରାୟୁଃ ।

ଅର୍ଥ:---ଅଷ୍ଟମାଧିପତି ପାପଗ୍ରହ ଓ ଦୁଃସ୍ଥାନ ହୋଇ ପାପଗ୍ରହ ସଙ୍ଗେ ଥିଲେ ଅଳ୍ପାୟୁ ହୁଏ । କିନ୍ତୁ ସେହି ଅଷ୍ଟମାଧିପତି ଶୁଭ-ଗ୍ରହସହ ଶୁଭରାଶିରେ ଅଥବା ଶୁଭଦୃଷ୍ଟି ଥାଇ ଅଷ୍ଟମରେ ଥିଲେ ଦୀର୍ଘାୟୁ ହୁଏ ।

ନାଶସ୍ଥେତନୁପେଽଥବାଽନିଧନପେ ପାପେନଯୁକ୍ତେକ୍ଷିତେ ।
ମୂଢ଼େଦୃଶ୍ୟଗତେଽଥବାଽରିପୁଗୃହେ ଜାତୋଽଗତାୟୁର୍ଭବେତ୍ ।
ଦୀର୍ଘାୟୁର୍ନିଜତୁଙ୍ଗଗେ ଶୁଭଯୁତେ କେନ୍ଦ୍ରେ ତ୍ରିକୋଣେଽଥବା ।
ରନ୍ଧ୍ରେ ରନ୍ଧ୍ରପତୌ ଚିରାୟୁରୁଦିତଂ ଯାତେବଲଗ୍ନାଧିପେ ।

ଅର୍ଥ:---ଲଗ୍ନ ବା ଅଷ୍ଟମାଧିପତି ପାପଯୁକ୍ତ ବା ପାପଦୃଷ୍ଟ ହୋଇ ଅଷ୍ଟମସ୍ଥ ହେଲେ ଅଥବା ଅସ୍ତଗତ ବା ଶତ୍ରୁଗୃହସ୍ଥ ହେଲେ ଅଳ୍ପାୟୁ ହୁଏ । କିନ୍ତୁ ସେହି ଲଗ୍ନ ବା ଅଷ୍ଟମା-ଧିପତି ଶୁଭଯୁକ୍ତ ହୋଇ ଉଚ୍ଚ, ସ୍ୱକ୍ଷେତ୍ର, କେନ୍ଦ୍ର ବା କୋଣସ୍ଥ ହେଲେ ଦୀର୍ଘାୟୁ ଯୋଗ ହୁଏ ।

କାଳିଦାସ୍‌ ମତରେ

କୋପନେ ପରିବୃତୋଽଷ୍ଟମସ୍ୟ ଚେତ୍ ।
ଅଷ୍ଟମସ୍ଥଳମୁପୈତି ସୁନ୍ଦର !

ମାନୁଷସ୍ୟ ଖଳୁ ଦୀର୍ଘଜୀବିତଂ,
ପୂର୍ଣ୍ଣଚନ୍ଦ୍ର ସଦୃଶାନନେ ! ବଦ ।

ଅର୍ଥ:---ଅଷ୍ଟମାଧିପତି ଅଷ୍ଟମସ୍ଥ ହେଲେ ଜାତକର ଦୀର୍ଘାୟୁ ଯୋଗ ହୁଏ ।

ଆୟୁର୍ଧୀଶଚରମାଧିପୌଶ୍ଚ ପା-
ବନ୍ତ୍ୟଭେ ସୁତନୁଚ୍ଛେତ୍ରପୁନଷ୍ଟତୌ ।

କୋମଳାଙ୍ଗ୍ୟୁଦୟ ମଷ୍ଟମଗତୌ,
ଦୀର୍ଘମାୟୁରୁପଯଚ୍ଛତୋନୃଷୁ ।

ଅର୍ଥ:---ଅଷ୍ଟମ ଓ ଦ୍ୱାଦଶାଧିପତି ଷଷ୍ଠ ଓ ବ୍ୟୟଗତ ହେଲେ, ଅଥବା ସେହି ଅଷ୍ଟମ, ଦ୍ୱାଦଶାଧିପ ଲଗ୍ନ ଓ ଅଷ୍ଟମସ୍ଥ ହେଲେ ମନୁଷ୍ୟ ଦୀର୍ଘଜୀବୀ ହୁଏ ।

ସୁଭ୍ରୁ ! ଭାସ୍କରସୁତୋଽଷ୍ଟମାନ୍ତ୍ୟଗଃ,
କିଂସ୍ୱିଦଙ୍ଗ ବସୁମନ୍ଦିରଂଗତଃ ।

କର୍ମଯୋଽପି ବରବର୍ଣ୍ଣିନି ! ପ୍ରିୟେ !
ଦୀର୍ଘଜୀବିତଫଳପ୍ରଦୋନୃଣାଂ ।

ଅର୍ଥ:---ଶନି ଅଷ୍ଟମ ଓ ଦ୍ୱାଦଶସ୍ଥ ହେଲେ ବା ଲଗ୍ନ ଓ ଅଷ୍ଟମସ୍ଥ ହେଲେ ମନୁଷ୍ୟ ଦୀର୍ଘାୟୁ ଭୋଗକରେ । ସେହିପରି ଦଶମାଧିପତି ଅଷ୍ଟମ, ଦ୍ୱାଦଶ ବା ଲଗ୍ନ ଓ ଅଷ୍ଟମସ୍ଥ ହେଲେ ମଧ୍ୟ ମନୁଷ୍ୟ ଦୀର୍ଘାୟୁ ଲଭକରେ ।

ଅଷ୍ଟମେଶ ଦଶମାଧିପୌଁଶନିଃ,
କେନ୍ଦ୍ରଲାଭ ନବ ପଞ୍ଚମସ୍ଥିତାଃ ।
ଭବନ୍ତି ଚେ ଖଳୁଦଶନ୍ତ୍ର ଜୀବତଂ,
ଦୀର୍ଘମାୟୁସ୍ତତଗତେତ୍ତଦୀର୍ଘିତଂ ।

ଅର୍ଥ:---ଅଷ୍ଟମେଶ, ଦଶମେଶ ଓ ଶନି କେନ୍ଦ୍ର, ଏକାଦଶ ଓ ତ୍ରିକୋଣସ୍ଥ ହେଲେ ମନୁଷ୍ୟ ଦୀର୍ଘଜୀବୀ ହୁଏ ।

ମଧ୍ୟାୟୁ ଯୋଗ

---

**ସୂତ୍ର:-ପ୍ରଥମଦ୍ୱିତୀୟୟୋରନ୍ତ୍ୟୟୋର୍ବାମଧ୍ୟମ୍ । ୩ ।**

ଅର୍ଥ:---ଲଗ୍ନାଧିପତି ଓ ଅଷ୍ଟମାଧିପତି ଉଭୟେ ଚରରାଶିରେ ଥିଲେ କିମ୍ବା ସେ ଦୁହିଙ୍କ ମଧ୍ୟରୁ ଗୋଟିଏ ଚରରାଶିରେ ଏବଂ ଅନ୍ୟଟି ସ୍ଥିରରାଶିରେ ଥିଲେ ମଧ୍ୟମାୟୁ ହୁଏ ।

ସେହିପରି ପରାଶର ଯଥା

"ଅଥାତଃ ସଂପ୍ରବକ୍ଷ୍ୟାମି ମଧ୍ୟାୟୁର୍ଯୋଗମୁତ୍ତମମ୍ ।
ଚରେ ଲଗ୍ନାଧିପେ ବାପି ସ୍ଥିରେ ରନ୍ଧ୍ରପତୌର୍ଯଦି ।
ତଦାମଧ୍ୟାୟୁଷଂ ବିନ୍ଦ୍ୟାତ୍ ଦ୍ୱୌଦ୍ୱନ୍ଦ୍ୱେ ମଧ୍ୟମାୟୁଷଃ ।"

ଅନ୍ୟାନ୍ୟ ମତରେ ଯଥା

"ପାପାଃ ପଣଫରତ୍ରୁର୍ଯାନିସ୍ଥା ମଧ୍ୟମାୟୁଃ ।"

ସମସ୍ତ ପାପଗ୍ରହ ପଣଫର (୨।୫।୮।୧୧ ଭାବ)ରେ ଥିଲେ ବା କେବଳ ଭୃଗାନ୍ନ ଚତୁର୍ଥସ୍ଥ ହେଲେ ମଧ୍ୟମାୟୁ ହୁଏ ।

"ଅଙ୍ଗେଶେ ବଲେ ଜୀବେକେନ୍ଦ୍ରକୋଣେ ତ୍ରିକେପାପେମଧ୍ୟମାୟୁଃ ।"

ଲଗ୍ନେଶ ନିର୍ବଳୀ, ବୃହସ୍ପତି କେନ୍ଦ୍ର ବା ତ୍ରିକୋଣସ୍ଥ ଏବଂ ପାପଗ୍ରହ ସମସ୍ତ ୬ଷ୍ଠ, ୮ମ, ଦଶସ୍ଥ ହେଲେ ମଧ୍ୟମାୟୁ ଯୋଗହୁଏ ।

"ଶୁଭେକେନ୍ଦ୍ରକୋଣେ ମନ୍ଦେବଲାନ୍ନି ଷଷ୍ଠାଷ୍ଟମେ ବା ପାପେମଧ୍ୟାୟୁ ।"

ସମସ୍ତ ଶୁଭଗ୍ରହ କେନ୍ଦ୍ର ବା ତ୍ରିକୋଣରେ ଥିବେ ଶନି ବଳବାନ୍ ହୋଇ ୬ଷ୍ଠ ବା ଅଷ୍ଟମସ୍ଥ ହୋଇଥିବ କିମ୍ବା ପାପଗ୍ରହ ଗୁଡ଼ିକ ଷଷ୍ଠାଷ୍ଟମ ହେଲେ ମଧ୍ୟମାୟୁ ହେବ ।

"ତ୍ରିକୋଣେ କେନ୍ଦ୍ରେ ବା ମିଶ୍ରା ମଧ୍ୟାୟୁଃ ।"

କେନ୍ଦ୍ର ଓ ତ୍ରିକୋଣରେ ଶୁଭାଶୁଭଗ୍ରହ ଥିଲେ ମଧ୍ୟ ମଧ୍ୟମାୟୁ ହୁଏ ।

ସେହିପରି

ବଲହୀନେ ବଲଗ୍ନେଶେ ଜୀବେକେନ୍ଦ୍ର ତ୍ରିକୋଣଗେ ।
ଷଷ୍ଠାଷ୍ଟମବ୍ୟୟେପାପେ ମଧ୍ୟମାୟୁରୁଦାହୃତମ୍ ।

ଅର୍ଥ:---ଲଗ୍ନେଶ ବଳହୀନ, ବୃହସ୍ପତି କେନ୍ଦ୍ର ବା କୋଣସ୍ଥ ଏବଂ ସମସ୍ତ ପାପଗ୍ରହ ଷଷ୍ଠାଷ୍ଟମ, ବ୍ୟୟସ୍ଥ ହେଲେ ମଧ୍ୟମାୟୁ-ଯୋଗ ହୁଏ ।

ଶୁଭେ କେନ୍ଦ୍ରେ ତ୍ରିକୋଣସ୍ଥେ ଶନୌବଲ ସମନ୍ୱିତେ ।
ଷଷ୍ଠେବାପ୍ୟଷ୍ଟମେ ପାପେ ମଧ୍ୟମାୟୁରୁଦାହୃତମ୍ ।

ଅର୍ଥ:---ସମସ୍ତ ଶୁଭଗ୍ରହ କେନ୍ଦ୍ର ବା କୋଣସ୍ଥ, ଶନିବଳଶାଳୀ ଓ ପାପ ଗ୍ରହଗଣ ଷଷ୍ଠବା ଅଷ୍ଟମସ୍ଥ ହେଲେ ମଧ୍ୟମାୟୁ ଯୋଗ ହେବ ।

"ଲଗ୍ନତ୍ରିକୋଣେ କେନ୍ଦ୍ରେ ବା ମଧ୍ୟମାୟୁଃ ମିଶ୍ରିତେ ।"

ଅର୍ଥ:---ଲଗ୍ନ, କେନ୍ଦ୍ର ଓ କୋଣ ସ୍ଥାନମାନଙ୍କରେ ଯେବେ ଶୁଭଗ୍ରହ ଓ ଅଶୁଭଗ୍ରହ ମିଶ୍ରିତ ଭାବରେ ଥାନ୍ତି ତେବେ ମଧ୍ୟମାୟୁ ହେବ ।

ଅଳ୍ପାୟୁ ଯୋଗ

---

**ସୂତ୍ର:-ମଧ୍ୟଯୋର୍ଦ୍ଦ୍ୟନ୍ତୟୋର୍ବାହୀନମ୍ । ୪ ।**

ଅର୍ଥ:---ଲଗ୍ନାଧିପତି ଓ ଅଷ୍ଟମାଧିପତି ଉଭୟେ ସ୍ଥିରରାଶିରେ ଥିବେ କିମ୍ବା ଗୋଟିଏ ଚରରାଶିରେ ଏବଂ ଅନ୍ୟଟି ଦ୍ୱିସ୍ୱଭାବରାଶିରେ ଥିଲେ ଅଳ୍ପାୟୁ ହୁଏ ।

ସେହିପରି ପରାଶର

"ଅଙ୍ଗାଧୀଶେ ଚରେ ଯସ୍ୟ ଦ୍ୱନ୍ଦଭେ ରନ୍ଧ୍ରନାୟକେ ।
ତସ୍ୟାଳ୍ପାୟୁର୍ମହାପ୍ରାଜ୍ଞ ନିର୍ବିଶଙ୍କଂ ଦ୍ୱିଜୋତ୍ତମ ।
ସ୍ଥିରେ ସ୍ଥିରେ ସ୍ଥିତେ ଦ୍ୱୌ ଚ ଲଗ୍ନରନ୍ଧ୍ରାଧିପୌଦ୍ୱିଜ ।
ସ୍ୱଳ୍ପାୟୁସ୍ତତ୍ର ବକ୍ତବ୍ୟଂ ସୃଷ୍ଟିକର୍ତ୍ତା ପ୍ରଚୋଦିତମ୍ ।"

ଅନ୍ୟମତରେ

"ସପାପେରନ୍ଧ୍ରେଶେନ୍ତ୍ୟେ ଷଷ୍ଠେ ବା ଅଳ୍ପାୟୁଃ ।"

ପାପଗ୍ରହସହ ରନ୍ଧ୍ରେଶ ଷଷ୍ଠ ବା ଦ୍ୱାଦଶ ସ୍ଥାନରେ ଥିଲେ ଅଳ୍ପାୟୁହୁଏ ।

"ପାପା ଅପୋକ୍ଲିମସ୍ଥା ଅଳ୍ପାୟୁଃ ।"

ସମସ୍ତ ପାପଗ୍ରହ ଅପୋକ୍ଳମରେ ( ୩ । ୬ । ୯ । ୧୨ ରେ ) ଥିଲେ ଅଳ୍ପାୟୁ ହୁଏ ।

"ଲଗ୍ନାଷ୍ଟମେଶୌ ବ୍ୟୟେରବେ ବାଽଲ୍ପାୟୁଃ ।"

ଲଗ୍ନ ଓ ଅଷ୍ଟମାଧିପତି ଉଭୟେ ଷଷ୍ଠ ବା ଦ୍ୱାଦଶସ୍ଥ ହେଲେ ଅଳ୍ପାୟୁ ଯୋଗ ହୁଏ ।

"ଧନେଶେଙ୍କେ ସ୍ତର୍କଜେ ଲଭେ ଇଜ୍ୟାଙ୍ଗୌ ଅଲ୍ପାୟୁଃ ।"

ଧନେଶ ନବମରେ ଶନି ସପ୍ତମରେ ଏବଂ ବୃହସ୍ପତି ଶୁକ୍ର ଏକାଦଶସ୍ଥ ହେଲେ ଅଳ୍ପାୟୁ ଯୋଗ ହୁଏ ।

"ଲଗ୍ନେର୍କଜାରୌ ବନ୍ଧ୍ରେ ରନ୍ଧ୍ରଗଃ ଷଷ୍ଠେଗୀବେଽଲ୍ପାୟୁଃ ।"

ଲଗ୍ନରେ ଶନି ମଙ୍ଗଳ, ଅଷ୍ଟମରେ ଚନ୍ଦ୍ର ଓ ଷଷ୍ଠରେ ବୃହସ୍ପତି ଥିଲେ ଅଳ୍ପାୟୁ ହୁଏ ।

"ଲଗ୍ନଶେଷ୍ଟମେଲ୍ପାୟୁଃ ।"

ଅଷ୍ଟମସ୍ଥ ଲଗ୍ନେଶ ଅଳ୍ପାୟୁ କରଏ ।

"ନିକେ ପାପେଙ୍ଗେଶେଽବଲେଲ୍ପାୟୁଃ ।"

୬ଷ୍ଠ, ୮ମ ଓ ଦ୍ୱାଦଶରେ ସମସ୍ତ ପାପଗ୍ରହ ଥାଇ ଲଗ୍ନେଶ ବଳହୀନ ହେଲେ ମନୁଷ୍ୟ ଅଳ୍ପାୟୁ ହୁଏ ।

"କ୍ରୂର ଷଷ୍ଠ୍ୟଂଶେ ମନ୍ଦରନ୍ଧ୍ରେଶୌ ସପାପୌ ପାପଦୃଷ୍ଟୌ ବା ଲ୍ପାୟୁ ।"

ଅଷ୍ଟମେଶ ଓ ଶନି ଉଭୟେ ପାପ ଷଷ୍ଠ୍ୟାଂଶରେ ଥାଇ ପାପଯୁକ୍ତ ବା ପାପଗ୍ରହ ଦୃଷ୍ଟ ହେଲେ ଅଳ୍ପାୟୁ ଯୋଗ ହୁଏ ।

"ପାପୈଃକେନ୍ଦ୍ରେ ଶୁଭଦୃଗ୍‌ଧୀନେଙ୍ଗେଶେଽବଲେଽଲ୍ପାୟୁଃ ।"

କେନ୍ଦ୍ରସ୍ଥ ସମସ୍ତ ପାପଗ୍ରହ ଶୁଭଦୃଷ୍ଟି ରହିତ ଏବଂ ଲଗ୍ନେଶ ଦୁର୍ବଲ ହେଲେ ଅଲ୍ପାୟୁ ହୁଏ ।

"ବ୍ୟୟାର୍ଥଗୌ ପାପୌ ଶୁଭ ଦୃଗ୍‌ଧୀନୌ ଅଲ୍ପାୟୁଃ ।"

ଦ୍ୱିତୀୟ ଓ ଦ୍ୱାଦଶସ୍ଥ ପାପଗ୍ରହଙ୍କୁ ଶୁଭଗ୍ରହ ଦେଖୁ ନଥିଲେ ଅଲ୍ପାୟୁ ହୁଏ ।

ସେହିପରି:---

ଅଲ୍ପାୟୁର୍ବ୍ୟୟଗେଽଥବା ରିପୁଗତେ ପାପାନ୍ୱିତେ ରନ୍ଧ୍ରଗେ ।
ଲଗ୍ନେଶେନ ଯୁତେତ୍ରୁ ତନବବଲେ ଜାତୋଲ୍ପଜୀବୀ ନରଃ ।

ଅର୍ଥ:---ଅଷ୍ଟମେଶ ବଲହୀନ ହୋଇ ପାପଗ୍ରହସହ ବା ଲଗ୍ନେଶସହ ଷଷ୍ଠ ବା ବ୍ୟୟସ୍ଥ ହେଲେ ଅଲ୍ପାୟୁ ଯୋଗ ହୁଏ ।

ଆୟୁଃସ୍ଥାନାଧିପଃ ପାପୈ ସହୈବ ବ୍ୟୟସଂସ୍ଥିତଃ ।
କରୋତ୍ୟଲ୍ପାୟୁଷଂ ଜାତଂ ଲଗ୍ନେଶୋଽପ୍ୟନ ସଂସ୍ଥିତଃ

ଅର୍ଥ:—ଅଷ୍ଟମେଶ ପାପଗ୍ରହ ସହ ବ୍ୟୟସ୍ଥ ହେଲେ ବା ଲଗ୍ନେଶ ସେମାନଙ୍କ ସହ ସେଠାରେ ଥିଲେ ଜାତକ ଅଲ୍ପାୟୁ ହୁଏ ।

ରନ୍ଧ୍ରେଶେ ନୀଚରାଶିସ୍ଥେ ରନ୍ଧ୍ରେ ପାପ ଗ୍ରହୈର୍ୟୁତେ ।
ଲଗ୍ନେଶେ ଦୁର୍ବଲେ ଯସ୍ୟ ତ୍ୱଲ୍ପାୟୁର୍ଭବତି ଧ୍ରୁବମ୍ ।

ଅର୍ଥ:—ଅଷ୍ଟମେଶନୀଚସ୍ଥ, ସମସ୍ତ ପାପଗ୍ରହ ଅଷ୍ଟମସ୍ଥ ଏବଂ ଲଗ୍ନେଶ ବଳହୀନ ହେଲେ ଅଳ୍ପାୟୁ ଯୋଗ ହୁଏ ।

ପଞ୍ଚମେ ପାପସଂଯୁକ୍ତେ ରନ୍ଧ୍ରେଶେ ପାପ ସଂଯୁତେ ।
ରନ୍ଧ୍ରେ ପାପଗ୍ରହୈର୍ଯୁକ୍ତେ ଅଳ୍ପାୟୁଷଂ ସଜାୟତେ ।

ଅର୍ଥ:---ପଞ୍ଚମ ଓ ଅଷ୍ଟମରେ ପାପଗ୍ରହ ଥାଇ ଅଷ୍ଟମେଶ ପାପଯୁକ୍ତ ହେଲେ ମନୁଷ୍ୟ ଅଳ୍ପାୟୁ ହୁଏ ।

ରନ୍ଧ୍ରେଶେ ପାପସଂଯୁକ୍ତେ ରନ୍ଧ୍ରେ ପାପଗ୍ରହୈର୍ଯୁତେ ।
ବ୍ୟୟେ କ୍ରୂର ଗ୍ରହୈର୍ଯୁକ୍ତେ ଜାତମାତ୍ରଂ ମୃତ୍ୟୁର୍ଭବେତ୍ ।

ଅର୍ଥ:---ଅଷ୍ଟମେଶ ପାପଗ୍ରହ ସହ ଥାଇ ଅଷ୍ଟମ ଓ ବ୍ୟୟରେ ପାପ ଗ୍ରହ ଥିଲେ ଜାତକର ଜନ୍ମହେବା ସଙ୍ଗେ ସଙ୍ଗେ ମୃତ୍ୟୁ ହୁଏ ।

କେନ୍ଦ୍ରେ ତ୍ରିକୋଣେ ପାପସ୍ଥା ଷଷ୍ଠାଷ୍ଟ ଶୁଭଗାଯଦ ।
ଲଗ୍ନେ ରନ୍ଧ୍ରେଶ ନୀଚସ୍ଥେ ଜାତଃ ସଦ୍ୟ ମୃତ୍ୟୁର୍ଭବେତ୍ ।

ଅର୍ଥ:---କେନ୍ଦ୍ର ଓ ତ୍ରିକୋଣରେ ସମସ୍ତ ପାପଗ୍ରହଯୁକ୍ତ ଏବଂ ଷଷ୍ଠ ଓ ଅଷ୍ଟମରେ ସମସ୍ତ ଶୁଭଗ୍ରହ ଥାଇ ଲଗ୍ନ ଓ ଅଷ୍ଟମେଶ ନୀଚସ୍ଥ ହେଲେ ଜନ୍ମହେବା ସଙ୍ଗେ ସଙ୍ଗେ ମୃତ୍ୟୁ ହୁଏ ।

ପ୍ରକାରାନ୍ତରରେ - ଅପୂର୍ଣ୍ଣାୟୁ

"ଧର୍ମେମୋକ୍ଷେ ଚିରାୟୁଷ୍ୟଂ ଧର୍ମେ କାମେ ଚ ମଧ୍ୟମମ୍ ।
ଧର୍ମେ ଧନେ ଚ ସ୍ୱଳ୍ପାୟୁ-ର୍ଧନେ ଧର୍ମେ ଗତାୟୁଷଃ ।"

ଅର୍ଥ---ଲଗ୍ନାଧିପତି ଅଷ୍ଟମାଧିପତି ଏକାଦଶ ପଞ୍ଚମରେ ଥିଲେ ଦୀର୍ଘାୟୁ, ଏକାଦଶ ତୃତୀୟରେ ଥିଲେ ମଧ୍ୟମାୟୁ, ଏକାଦଶ ଦ୍ୱିତୀୟ ବା ଏକାଦଶ ନବମରେ ଥିଲେ ଅଳ୍ପାୟୁ, ଯଦି ଲଗ୍ନାଧିପତି ଅଷ୍ଟମାଧିପତି ଦୁହେଁ ଏକାଦଶରେ ଥାଆନ୍ତି ତେବେ ହୀନାୟୁ ହେବ ।

## ଆୟୁର୍ବୋଧକ ଚକ୍ର

| | ୧ ଯୋଗ | ୨ୟ ଯୋଗ | ୩ୟ ଯୋଗ |
|---|---|---|---|
| ଦୀର୍ଘାୟୁ | ଚରରେ ଲଗ୍ନେଶ<br>,, ଅଷ୍ଟମେଶ | ସ୍ଥିରରେ ଲଗ୍ନେଶ<br>ଦ୍ୱ୍ୟାତ୍ମିକରେ ଅଷ୍ଟମେଶ | ଦ୍ୱ୍ୟାତ୍ମିକରେ ଲଗ୍ନେଶ<br>ସ୍ଥିରରେ ଅଷ୍ଟମେଶ |
| ମଧ୍ୟାୟୁ | ଚରରେ ଲଗ୍ନେଶ<br>ସ୍ଥିରରେ ଅଷ୍ଟମେଶ | ସ୍ଥିରରେ ଲଗ୍ନେଶ<br>ଚରରେ ଅଷ୍ଟମେଶ | ଦ୍ୱିସ୍ୱଭାବରେ ଲଗ୍ନେଶ<br>,, ଅଷ୍ଟମେଶ |
| ଅଳ୍ପାୟୁ | ଚରରେ ଲଗ୍ନେଶ<br>ଦ୍ୱ୍ୟାତ୍ମିକରେ ଅଷ୍ଟମେଶ | ସ୍ଥିରରେ ଲଗ୍ନେଶ<br>,, ଅଷ୍ଟମେଶ | ଦ୍ୱିସ୍ୱଭାବରେ ଲଗ୍ନେଶ<br>ଚରରେ ଅଷ୍ଟମେଶ |

## ଗଣେଶ ଦୈବଜ୍ଞ ମତରେ ଆୟୁନିରୂପଣ---

ଲଗ୍ନାଧୀଶୋଽତି ବୀର୍ଯ୍ୟୋ ଯଦି ଶୁଭ ବହଗୈର୍ବୀକ୍ଷିତଃ କେନ୍ଦ୍ରଯାତୈ-
ର୍ଦଦ୍ୟାଦାୟୁଃ ସୁଦୀର୍ଘଂ ଗୁଣଗଣ ସହିତଂ ଶ୍ରୀଯୁତଂ ମାନବାନାମ୍ ।
ସୌମ୍ୟାଃ କେନ୍ଦ୍ରାଳୟସ୍ଥା ଜନୁଷି ଚ ରଜନୀ ନାୟକେ ସ୍ୱୀୟତୁଙ୍ଗେ
ବୀର୍ଯାଢ୍ୟେ ଲଗ୍ନନାଥେ ବସୁଷି ଚ ଶରଦାଂ ଷଷ୍ଟିରାୟୁର୍ନରାଣାମ୍ ।୧

ଅର୍ଥ:---ଯଦି କେନ୍ଦ୍ରସ୍ଥିତ ଶୁଭଗ୍ରହମାନଙ୍କ ଦ୍ୱାରା ଦୃଷ୍ଟି ହୋଇ ଲଗ୍ନେଶ ପୂର୍ଣ୍ଣବଳୀ ହୋଇଥାଏ ତେବେ ମନୁଷ୍ୟ ଧନ ଓ ଗୁଣସମ୍ପନ୍ନ ଯୁକ୍ତ ହୋଇ ପୂର୍ଣ୍ଣ ଆୟୁ ଭୋଗ କରେ । ପୁଣି ଯଦି ଶୁଭଗ୍ରହମାନେ କେନ୍ଦ୍ରରେ ଥିବେ, ଚନ୍ଦ୍ର ଉଚ୍ଚସ୍ଥ ହୋଇଥିବେ ଏବଂ ଲଗ୍ନେଶ ବଳୀ ହୋଇ ଲଗ୍ନରେ ଥିବେ ତେବେ ଜାତକ ୬୦ ବର୍ଷ ଆୟୁ ଭୋଗ କରେ । ୧ ।

ସୌମ୍ୟାଃକେନ୍ଦ୍ରାଳୟସ୍ଥା ବସୁଷି ସୁରଗୁରୌଲଗ୍ନତୋବାସୁଧାଂଶୋ-
ରାୟୁର୍ୟୁକ୍ତଂ ନ ଦୃଷ୍ଟଂ ନଚଗଗନଗତୈଃସପ୍ତତିର୍ବତ୍ସରାଣାମ୍ ।
ଯାତାମୂଳତ୍ରିକୋଣେ ଶୁଭଗଗନ ଚରଃ ସ୍ୱୀୟତୁଙ୍ଗେ ସୁରେଜ୍ୟେ
ଲଗ୍ନାଧୀଶୋଽତିବୀର୍ଯ୍ୟେ ଗଗନବସୁସମାତ୍ରଲ୍ଲମାୟୁର୍ନରାଣାମ୍ । ୨ ।

ଅର୍ଥ:---ଲଗ୍ନ ବା ଚନ୍ଦ୍ରଠାରୁ କେନ୍ଦ୍ରରେ ସମସ୍ତ ଶୁଭଗ୍ରହଥିବେ ପୁଣି ବୃହସ୍ପତି ଲଗ୍ନରେ ଥିବେ ଏବଂ ଅଷ୍ଟମଭାବ ଦଶମସ୍ଥାନ ଗତ ପାପଗ୍ରହଦ୍ୱାରା ଦୃଷ୍ଟ ବା ଯୁକ୍ତ ନ ହେଲେ ୭୦ ବର୍ଷ ଆୟୁହୁଏ । ପୁଣି ଶୁଭଗ୍ରମାନେ ନିଜ ମୂଳତ୍ରିକୋଣରେ

ଥିବେ, ବୃହସ୍ପତି ନୀଚ ଭିନ୍ନସ୍ଥାନରେ ଥିବ ଓ ଲଗ୍ନେଶ ବଳବାନ୍ ହୋଇଥିଲେ ୮୦ ବର୍ଷ ଆୟୁ ହୁଏ । ୨ ।

ସୌମ୍ୟେ କେନ୍ଦ୍ରେ ଭଗ୍ନାଶ୍ଚୟାଦନ୍ନଧନ ପଦଂ ଖେଟହୀନଂ ସମାଃ ସ୍ୟୁ-ସ୍ତ୍ରିଂଶତ୍ସୌମ୍ୟେକ୍ଷିତଂ ଚେତ୍ତ ଗଗନ ହୃମକରୈଃ---।

ସଂଯୁତାଥୋପ୍ରବେଧେଚେତ୍ତ,ସ୍ୱନଂଶେ ଗ୍ରହେ ରେଜ୍ୟେ ମୃଗାକନ୍ଯ ନମିତଂ ତୃର୍ଯ୍ୟଗେ ଲଗ୍ନଗେ ବା,ଚନ୍ଦ୍ରେ ଦୂ୍ୟନେଶ୍ରୁଦେଷ୍ଟେ ର ଗଗନରସ ମିତଂ-କୋଣଗାଃ ସୌମ୍ୟଖେଟାଃ । କାହେ ଲଗ୍ନେ ସୁରେଜ୍ୟେ ଯଦ୍ୟଭବତ-ତଦା ଖାଷ୍ଟତୁଲ୍ୟଂ ଲଯ୍ୟେଶୋ,ଧର୍ମେଙ୍ଗେ ଗ୍ରହନାଥେ ନିଧନ-ଭବନଗେନ୍ରୁ ବଦ୍ରୁଷ୍ଟେ ବେଧହନ୍ତାଃ, ଲଗ୍ନାଧୀଶାଷ୍ଟନାଥୌ-ଲଯ୍ୟଭବନ ଗତୌ ସପ୍ତବିଂଶତ୍ର ବାଲଚନ୍ଦ୍ର,କ୍ରେରେଙ୍କ୍ୟୌ-ଚନ୍ଦ୍ର ଦୃଷ୍ଟୌ ଯଦ୍ୟଂ ନିଧନଗତଃ କଣ୍ଟକାସ୍ତେ ଦ୍ୱିପକ୍ଷୋଃ । ୩-୪

ଅର୍ଥ:---ବୁଧ ବଳବାନ ହୋଇ କେନ୍ଦ୍ରରେ ଥିଲେ ଓ ଅଷ୍ଟମ-ସ୍ଥାନରେ କୌଣସି ଗ୍ରହ ନଥିଲେ ୩୦ ବର୍ଷ ଆୟୁ ହୁଏ । ସେହିପରି ଅଷ୍ଟମକୁ ଶୁଭଗ୍ରହ ଦେଖୁଥିଲେ ଆୟୁ ୪୦ ବର୍ଷ ହୁଏ । ବୃହସ୍ପତି ନିଜଘରେ ( ଧନୁ ବା ମୀନରେ ) ବା ନିଜ ଦ୍ରେଷ୍କାଣରେ ଥିଲେ ଆୟୁ ୨୭ ବର୍ଷ ହୁଏ । ଚନ୍ଦ୍ର-ସ୍ୱଗୃହୀ ବା ଲଗ୍ନସ୍ଥ ଏବଂ ଶୁଭଗ୍ରହ ସପ୍ତମସ୍ଥ ହେଲେ ୬୦ ବର୍ଷ ଆୟୁ ହୁଏ । ସମସ୍ତ ଶୁଭଗ୍ରହ ନବମ ଓ ପଞ୍ଚମସ୍ଥ ହୋଇ ବୃହସ୍ପତି କର୍କଟ ଲଗ୍ନସ୍ଥ ହେଲେ ଜାତକର ୮୦ ବର୍ଷ ଆୟୁ ହୁଏ । ଅଷ୍ଟମେଶ ନବମସ୍ଥ ଏବଂ ପାପ ଦୃଷ୍ଟ ଲଗ୍ନେଶ ଅଷ୍ଟ-ମସ୍ଥ ହେଲେ ମନୁଷ୍ୟର ୨୪ ବର୍ଷରେ ମୃତ୍ୟୁ ହୁଏ ।

ଅଷ୍ଟମେଶର ସହିତ ଲଗ୍ନେଶ ୮ମରେଥିଲେ ୨୭ବର୍ଷରେ ଆୟୁ ଶେଷ ହୁଏ । ପାପଯୁକ୍ତ ବୃହସ୍ପତି ଲଗ୍ନସ୍ଥ ହୋଇ ଚନ୍ଦ୍ର- ଦୃଷ୍ଟ ହେଲେ ଏବଂ ଅଷ୍ଟମରେ କୌଣସି ଗ୍ରହ ନ ଥିଲେ ୨୨ ବର୍ଷରେ ମୃତ୍ୟୁଘଟେ । ୩-୪

ଲଗ୍ନେନ୍ଦୂ କ୍ରୂରହୀନୌ ବପୁଷି ସୁରଗୁରୌ ରନ୍ଧ୍ରଭଂ ଖେଟହୀନଂ,
କେନ୍ଦ୍ରେ ସୌମ୍ୟେଽଚଶୈଳାଃସିତବବୁଧଗୁରୁଃସ୍ୟାଚ୍ଛତଂକେନ୍ଦ୍ରଗୌଚେତ୍,
ବାଗୀଶୋ କର୍କଲଗ୍ନେ ଶତମିହଭୃଗୁଜେ କେନ୍ଦ୍ରଗେଽଥାର୍କସୂନୌ
ଧର୍ମାଙ୍ଗସ୍ଥେ ସୁଧାଂଶୌ ବ୍ୟୟନବମଗତେ ହାୟନାନାଂ ଶତଂସ୍ୟାତ୍ । ୫

ଅର୍ଥ:—ଲଗ୍ନ ଓ ଚନ୍ଦ୍ରର ପାପଗ୍ରହ ସମ୍ବନ୍ଧ ଶୂନ୍ୟ, ବୃହସ୍ପତି ଲଗ୍ନସ୍ଥ, ଅଷ୍ଟମଭାବ ଗ୍ରହଶୂନ୍ୟ ହୋଇ କେନ୍ଦ୍ରରେ ଶୁଭଗ୍ରହଥିଲେ ୭୦ ବର୍ଷ ଆୟୁହୁଏ । ଶୁକ୍ର ଓ ବୃହସ୍ପତି ଲଗ୍ନଲେ ଥିଲେ ମନୁଷ୍ୟ ୧୦୦ ବର୍ଷ ଆୟୁ ଭୋଗକରେ । ବୃହସ୍ପତି କର୍କଟ ଲଗ୍ନରେଥାଇ ଶୁକ୍ର କେନ୍ଦ୍ରରେ ଥିଲେ ମନୁଷ୍ୟର ୧୦୦ ବର୍ଷ ଅୟୁହୁଏ । ଶନି ଲଗ୍ନ ବା ନବମରେ ଓ ଚନ୍ଦ୍ର ନବମ ବା ଦ୍ୱାଦଶରେ ଥିଲେ ୧୦୦ ବର୍ଷ ଆୟୁହୁଏ । ୫ ।

ଧୀକେନ୍ଦ୍ରାୟୁର୍ନବସ୍ଥା ଯଦଖଲଖଚରା ନୋଗୁରୁର୍ଦ୍ଧେ ବଲଗ୍ନେ,
କେନ୍ଦ୍ରେ କାବ୍ୟେ ଗୁରୌବାଶୁଭମପିନ୍ଧନଂସୌମ୍ୟଦୃଷ୍ଟଂଶତଂସ୍ୟାତ୍।
ଲଗ୍ନାବ୍ଧେର୍ନଖେଟା ଯଦ କ୍ଷଧନଗତା ବୀର୍ଯ୍ୟ ଭାକ୍ଜୌସିତେକେନ୍ଦ୍ରେ,
ପୂର୍ଣ୍ଣାୟୁଃ ସ୍ୱୀୟବଶୌ ଶୁଭଗଗନ ଚରାଃ ଷଷ୍ଠି ରଙ୍ଗୋଇଗେଽବ୍ଜାଃ ୬

ଅର୍ଥ:—ନବାମ ପଞ୍ଚମ, କେନ୍ଦ୍ର ଓ ଅଷ୍ଟମରେ ପାପଗ୍ରହ ନ ଥିବେ, ଧନୁ ବା ମୀନ ଲଗ୍ନହୋଇଥିବ । କେନ୍ଦ୍ରରେ ବୃହସ୍ପତି ବା ଶୁକ୍ରଥିବେ, ଅଷ୍ଟମ ଓ ନବମକୁ ଶୁଭଗ୍ରହ ଦେଖୁଥିଲେ ୧୦୦ ବର୍ଷ ପରମାୟୁ ହେବ । ଲଗ୍ନ ବା ଚନ୍ଦ୍ରର ଅଷ୍ଟମ ଭାବ ଗ୍ରହଶୂନ୍ୟ ହୋଇ ଶୁକ୍ର, ବୃହସ୍ପତି ବଳବାନ ହେଲେ ଜାତକର ପୂର୍ଣ୍ଣାୟୁ ହୁଏ । ଶୁଭଗ୍ରହମାନେ ନିଜ ନିଜ ରାଶିରେ ଥାଇ ବୃଷଲଗ୍ନରେ ଚନ୍ଦ୍ର ଥିଲେ ୬୦ ବର୍ଷ ଆୟୁ-ହୁଏ । ୬ ।

କୋଦଣ୍ଡାନ୍ତ୍ୟାର୍ଧମଂଗଂ ଯଦା ସକଳଖଗାଃ ସ୍ୱୋଚଗାଙ୍କେଜନାଂଶେ-
ର୍ଗୋଷ୍ଠେ ପୂର୍ଣ୍ଣଂଚକେନ୍ଦ୍ରେ ସୁପଚ୍ଚ ଭୃଗୁଜୌ ଲଭତେଽବ୍ଦକେ--
ପଗ୍ରସ୍ତୁଃ ।

ଶୁକ୍ରେମୀନେଚନ୍ଦ୍ରେ ନିଧନଗୃହଗତେ ସୌମ୍ୟଦୃଷ୍ଟେ ସୁଧାଂଶୌ
ଜୀବେକେନ୍ଦ୍ରେ ଶତଂସ୍ୟାଦଥ ଚନ୍ଦ୍ରଗୃହପେ ଛିଦ୍ରଗେ---
ପୁଷ୍ଟରେଽବ୍ଦକେ । ୭ ।

ବାଗୀଶେ ବାର୍ଯ୍ୟଯୁକ୍ତେ ନବମଭବନଗାଃ ସର୍ବଖେଚାଃଶତାୟୁଃ
କର୍କେଽଙ୍ଗେ ଜୀବଚନ୍ଦ୍ରୌ ସହଜ ରନ୍ଧ୍ରଭବେ ସତ୍ଭକବଙ୍କୌଚକେନ୍ଦ୍ରେ ।
କେନ୍ଦ୍ରେ ସୂର୍ଯ୍ୟାର ମନ୍ଦା ଗୁରୁନବ ଲବଗା ବାକ୍‌ପତୌଲଗ୍ନଯାତେ
ବ୍ୟଷ୍ଟସ୍ଥାନେଷୁ ଶେଷାଃ ଶରଗଜ ତୁଲତଂ ସ୍ୟାନ୍ନସ୍ତ୍ରଣାଂ--
ତଦାୟୁଃ । ୮ ।

ଅର୍ଥ:—ଧନୁରଉତ୍ତରାର୍ଧରେ ( ୧୫ ଅଂଶପରେ ) ଲଗ୍ନ ହୋଇଥିବ, ବୃଷର ୨୪ ଅଂଶରେ ବୁଧଥିବେ ଏବଂ ଅନ୍ୟାନ୍ୟ

ଗ୍ରହମାନେ ନିଜ ନିଜ ଉଚ୍ଚରେ ଥିଲେ ମନୁଷ୍ୟ ପୂର୍ଣ୍ଣାୟୁ ଭୋଗକରେ । ସେହିପରି ବୃହସ୍ପତି ଓ ଶୁକ୍ର କେନ୍ଦ୍ରରେ ଥାଇ ଚନ୍ଦ୍ର ଏକାଦଶରେ ଥିଲେ ପୂର୍ଣ୍ଣାୟୁ ହୁଏ । ଶୁକ୍ରଯୁକ୍ତ ମୀନ-ଲଗ୍ନକୁ ଶୁଭଗ୍ରହ ଦୃଷ୍ଟି, ଚନ୍ଦ୍ର ଅଷ୍ଟମସ୍ଥ ହୋଇ ବୃହସ୍ପତି କେନ୍ଦ୍ରସ୍ଥ ହେଲେ ଜାତକର ୧୦୦ ବର୍ଷ ଆୟୁ ହୁଏ । ଅଥବା ଲଗ୍ନେଶ ଅଷ୍ଟମରେ, ଚନ୍ଦ୍ର ଦଶମରେ ଏବଂ ବୃହ-ସ୍ପତି ବଳବାନ୍ ହୋଇ ଅନ୍ୟ ସବୁ ଗ୍ରହମାନେ ନବମରେ ଥିଲେ ୧୦୦ ବର୍ଷ ଆୟୁହୁଏ । କର୍କଟ ଲଗ୍ନକୁ ବୃହସ୍ପତି, ଚନ୍ଦ୍ର ତୃତୀୟ, ଷଷ୍ଠ ବା ଏକାଦଶସ୍ଥ ହୋଇ, ବୁଧ, ଶୁକ୍ର କେନ୍ଦ୍ରରେ ଥିଲେ ୧୦୦ ବର୍ଷ ଆୟୁ ହୁଏ । ବୃହସ୍ପତିର ନବମାଂଶରେଥାଇ ରବି, ମଙ୍ଗଳ ଓ ଶନି କେନ୍ଦ୍ରଗତ ହୋଇଥିବେ ଏବଂ ବୃହସ୍ପତି ଲଗ୍ନରେ ଥାଇ ଅନ୍ୟ ଗ୍ରହ-ମାନେ ଦ୍ୱାଦଶଛଡ଼ା ଅନ୍ୟତ୍ର ଥିଲେ ୮୫ ବର୍ଷ ଆୟୁ-ହେବ । ୭-୮ ।

କ୍ରୂରସୌମ୍ୟାଂଶଯାତା ଉପଚୟ ଗୃହଗାଃ କାତରାଃ କଣ୍ଟକସ୍ଥାଃ
ସୌମ୍ୟା ବ୍ୟୋମାର୍କସଂଖ୍ୟ ଯଦତନୁପକୁଟୌରନ୍ଧ୍ରଗୌନୋପରାୟୁଃ
କେନ୍ଦ୍ରେ ଲଗ୍ନେଶଜୀବୌ ନବସୁତ ନିଧନେ କଣ୍ଟକେନୋ ଖଳାଖ୍ୟାଃ
ସମ୍ପୂର୍ଣ୍ଣଂ ପାପଷେଟା ଯଦଗୁରୁ ଜଳଗା ଜୀବଭାଂଚେ ସୌମ୍ୟାଃ । ୯ ।
ଯୁଗ୍ମର୍ଷାଂଶେ ଗତାବା ବ୍ୟୟଧନ ଗୃହାଗାସ୍ତେଚ୍ଛୁଭାଃ ଶୀତଭାନୁଃ
ସଂପୂର୍ଣ୍ଣୋଲଗ୍ନପାୟୀ ଶତମିହ ଜନନା ମିନ୍ଦଗ୍ମ ମନ୍ଦରଂସ୍ୟାତ୍ତ ।

ଲଗ୍ନେଶେ ସୌମ୍ୟଯୁକ୍ତେ ବସୁଷଣ୍ଟି ଚ ଲଯୁତେ ରନ୍ଧ୍ରେଶେନାନ୍ୟଦୃଷ୍ଟେ
ବାଂଶତ୍ରକେନ୍ଦ୍ରେ ଲଗ୍ନେଶେ ବଲବନ୍ଧୁକ୍ତ ତଥା---

ଲଗ୍ନପେବିଂଶଦାୟୁଃ । ୧୦ ।

ଅର୍ଥ:—ପାପଗ୍ରହମାନ ଶୁଭଙ୍କର ନବାଂଶରେ ଥାଇ ଉପଚୟ (୩, ୬, ୧୦, ୧୧ )ରେ ଥିବେ ଏବଂ ଯୁଦ୍ଧରେ ପରାଜୟ ହୋଇଥିବା ଶୁଭଗ୍ରହମାନେ କେନ୍ଦ୍ରରେ ଥିଲେ ୧୨୦ ବର୍ଷ ପରମାୟୁ ହୁଏ । ଏହି ଯୋଗରେ ଯଦି ଲଗ୍ନେଶ ଓ ମଙ୍ଗଳ ଅଷ୍ଟମସ୍ଥ ହୋଇଥାନ୍ତି ତେବେପୂର୍ଣ୍ଣାୟୁ ହୋଇପାରିବନାହିଁ । ଲଗ୍ନେଶ ଓ ବୃହସ୍ପତି କେନ୍ଦ୍ରରେ ଥାଇ ନବମ, ପଞ୍ଚମ ଓ ଅଷ୍ଟମରେ କୌଣସି ପାପଗ୍ରହ ନ ଥିଲେ ପୂର୍ଣ୍ଣାୟୁ ହୁଏ । ଯଦି ପାପଗ୍ରହ ନବମ ଓ ଚତୁର୍ଥରେ ଥିବେ ଏବଂ ଶୁଭଗ୍ରହ ବୃହସ୍ପତିର ନବାଂଶରେ ବା ସ୍ୱରାଶିର ନବାଂଶରେ ଥାଇ ଦ୍ୱାଦଶ ବା ଦ୍ୱିତୀୟରେ ଥିବେ ଓ ପୂର୍ଣ୍ଣଚନ୍ଦ୍ର ଲଗ୍ନସ୍ଥ ହେଲେ ସମସ୍ତ ସମ୍ପତ୍ତିର ଅଧିକାରୀ ହୋଇ ୧୦୦ ଆୟୁ ଭୋଗ କରେ । ଶୁଭଗ୍ରହ ଯୁକ୍ତ ଲଗ୍ନେଶ ଲଗ୍ନରେ ଓ ଅଷ୍ଟମେଶ ଅଷ୍ଟମରେ ଥାଇ ଅନ୍ୟ କୌଣସି ଗ୍ରହର ଦୃଷ୍ଟି ପାଉନଥିଲେ ୬୦ ବର୍ଷ ଆୟୁହୁଏ । ବଳହୀନ ହୋଇ ଲଗ୍ନେଶ ଓ ଅଷ୍ଟମେଶ ଯଦି କେନ୍ଦ୍ରରେ ଥାଏ ତେବେ ୩୦ ବର୍ଷ ଆୟୁହୁଏ । ୯ । ୧୦ ।

ଇନ୍ଦାବାପୋକ୍ଲ୍ମଷ୍ଟେ ତଦନୁ ତନୁପତୌ କର୍ବଲେ ପାପଦୃଷ୍ଟେ
ଦନ୍ତୈସ୍ତୁଲ୍ୟଂତତୋର୍କଃ ଖଲଖଗବବରେ ଲଗ୍ନଗୋବୃତ୍ତି ସଂଖ୍ୟମ୍ ।

ଶଃପେକେନ୍ଦ୍ରେ ସ୍ଥିରେକ୍ୟେ ଗୁରୁଃରପ୍ସୁ ସହଜେସ୍ୟାର---
ସପାପେଃଙ୍ଗନାଥେ,

ଗ୍ରମାନ୍ଦଂ କର୍କଲଗ୍ନେ କୁଜଭୁହ୍ନନ କରୌ କେନ୍ଦ୍ରରନ୍ଧ୍ରଂ---
ଗ୍ରହୋନମ୍ । ୧୧ ।

ଗ୍ରମାନ୍ଦଂସ୍ୟାଷ୍ଟମ୍ୟେଶେ ବପୁଷିତ ନିଧନଂ ସୌମ୍ୟହୀନଂଖବେଦା,
ଲଗ୍ନେଶୋରନ୍ଧ୍ରଯାତେ। ବପୁଷି ନିଧନପଃ ସ୍ୟାନ୍ନଶାଂ ବାଣସଂଖ୍ୟମ୍ ।
ନକ୍ରେ ତଗ୍ମାଂଶୁମନ୍ଦୌ ସହଜଚ୍ପୁଗତୌ କଣ୍ଟକେ ରନ୍ଧ୍ରନାଥେ,
ପାର୍ବାର୍ ବ୍ଧୃସଂଖ୍ୟଂ ତଦନୁ ଶୁଭଖଗାଃ ସନ୍ତିବେଷେଃଏ---
ଖାଗ୍ନିଃ । ୧୨ ।

ଅର୍ଥ:---ଚନ୍ଦ୍ର ଓ ଲଗ୍ନେଶ ବଳହୀନ ହୋଇ ପାପାଦୃଷ୍ଟିରେ ଅପୋକ୍ଳିମ ( ୩, ୬, ୯, ୧୨ )ସ୍ଥ ହେଲେ ୩୨ ବର୍ଷ ଆୟୁ ହୁଏ । ଲଗ୍ନେଶ ଦୁଇଟି ପାପିଗ୍ରହ ମଧ୍ୟରେ ଥିଲେ ୩୦ ବର୍ଷ ଆୟୁହୁଏ । ବୃହସ୍ପତି ଦ୍ୱାଦଶ ବା କେନ୍ଦ୍ରରେ ଥାଇ ପାପଗ୍ରହଯୁକ୍ତ ଲଗ୍ନେଶ ତୃତୀୟ ଷଷ୍ଠ ବା ନବମସ୍ଥ ହେଲେ ୩ ବର୍ଷଠାରେ ଆୟୁଶେଷ ହୁଏ । ସେହିପରି କେନ୍ଦ୍ର ଓ ଅଷ୍ଟମରେ ଗ୍ରହ ନ ଥାଇ କର୍କଟ ଲଗ୍ନରେ ଚନ୍ଦ୍ରମଙ୍ଗଳ ଯୁକ୍ତ ହେଲେ ୩ ବର୍ଷରେ ମୃତ୍ୟୁଘଟେ । ଅଷ୍ଟମରେ ଗ୍ରହ ନ ଥାଇ ଅଷ୍ଟମେଶ ଲଗ୍ନରେ ଥିଲେ ୪୦ ବର୍ଷରେ ଆୟୁ ଶେଷହୁଏ । ଲଗ୍ନେଶ ଅଷ୍ଟମରେ ଓ ଅଷ୍ଟମେଶ ଲଗ୍ନରେ ଥିଲେ ୫ ବର୍ଷରେ ବାଳକର ମୃତ୍ୟୁହୁଏ । ରବି ଓ ଶନି ମକରରାଶିରେ ଥାଇ ତୃତୀୟ ବା ଷଷ୍ଠ ହୋଇଥିଲେ ଏବଂ ଅଷ୍ଟ-

ମେଷ କେନ୍ଦ୍ରରେ ଥିଲେ ମନୁଷ୍ୟର ୪୪ ବର୍ଷ ଆୟୁ-ରହେ । ଏହି ଯୋଗରେ ଯଦି ଶୁଭଗ୍ରହ ଶୁଭରାଶିରେ ବା ଶୁଭଗ୍ରହ ନବାଂଶରେ ଥାଏ ତେବେ ୩୦ ବର୍ଷରେ ଆୟୁ-ଶେଷ ହୁଏ । ୧୧ । ୧୨ ।

କ୍ରୂରୈର୍ଦୃଷ୍ଟେଽଙ୍ଗନାଥେ ଯଦଶୁଭ ବହଗା ବୀର୍ଯ୍ୟବନ୍ତଃ ସୁଧାଂଶୌ ସଂସ୍ଥେ ସୌମ୍ୟେଗଣେଚେତ୍ର ଗୁଣମୁନି ତୁଲିତଂ ରନ୍ଧ୍ରଗୈର୍ମଧ୍ୟମାୟୁଃ । ସ୍ୟାଦିନ୍ଦ୍ରାବର୍ତ୍ତି ପାପୈରଥ ତପନସୁତେ ଦ୍ୟଙ୍ଗଲଗ୍ନେ ହି ଯାତେ ରିଃଫେଶେ ରନ୍ଧ୍ରନାଥେ ଯଦି ବଲରହିତେ କଙ୍କପବାକ୍ଷି—

ସଂଖ୍ୟମ୍ । ୧୩ ।

ଅର୍ଥ:—ଲଗ୍ନେଶ ପାପଦୃଷ୍ଟ ହୋଇଥିବ, ଶୁଭଗ୍ରହ ବଳବାନ୍ ହୋଇ-ଥିବେ ଏବଂ ଚନ୍ଦ୍ର ଶୁଭଗ୍ରହର ଷଡ୍‌ବର୍ଗରେ ଥିଲେ ୭୩ ବର୍ଷ ଆୟୁ ହେବ । ଦିବସରେ ଜନ୍ମ ହୋଇ ପାପଗ୍ରହ ଚନ୍ଦ୍ରର ଅଷ୍ଟମରେ ଥିଲେ ମଧ୍ୟମାୟୁ ହେବ । ଶନି ଦ୍ୱିସ୍ୱ-ଭାବ ଲଗ୍ନସ୍ଥ ହୋଇ ଅଷ୍ଟମେଶ ଓ ଦ୍ୱାଦଶେଶ ବଳହୀନ ହେଲେ ୨୫ ବର୍ଷ ଆୟୁହୁଏ । ୧୩ ।

କର୍କେଽଙ୍ଗେ ସପ୍ତସପ୍ତୌଖଲବହଗଯୁତେ ପୁଷ୍କରସ୍ଥେ ଦ୍ୱିକେଶେ କେନ୍ଦ୍ରେ ଯାତେସୁରେଜ୍ୟେ ଶରବଶିଖମିତଂ ପୁଷ୍କରେ ନୀରଗେବା । ସୌମ୍ୟେପିଯୂଷଭାନୌବ୍ୟୟନିଧନଗତେ ଦେହଗେବା କବୀଜ୍ୟା ବେଙ୍କର୍ଷେବ୍ୟୋମ ବାଣୈର୍ବ୍ୟୟବ୍ରପୁନିଧନେ ଲଗ୍ନନାଥତ୍ର୍ୟଚନ୍ଦ୍ରେ । ଶନ୍ୟଂଶେ ଲଗ୍ନନାଥୋ ଭୁଜଗଶରମିତଂ ସ୍ୟାଦ୍ଧି... । ୧୪ ।

ଅର୍ଥ:—ପାପଯୁକ୍ତ ହୋଇ ରବି କର୍କଟ ଲଗ୍ନରେ ଥିବେ ଏବଂ ଚନ୍ଦ୍ର ଦଶମସ୍ଥ ହୋଇ ବୃହସ୍ପତି କେନ୍ଦ୍ରସ୍ଥ ହେଲେ ୪୫ ବର୍ଷ ଆୟୁହେବ । ବୁଧ ଚତୁର୍ଥରେ ବା ଦଶମରେ ଥିବେ, ଚନ୍ଦ୍ର ଦ୍ୱାଦଶ, ଅଷ୍ଟମ ବା ଲଗ୍ନରେ ଥିବେ ଏବଂ ବୃହସ୍ପତି ଓ ଶୁକ୍ର ଏକରାଶିସ୍ଥ ହେଲେ ୫୦ ବର୍ଷ ଆୟୁହେବ । ଚନ୍ଦ୍ର ଲଗ୍ନେଶ ସହ ଦ୍ୱାଦଶ ଷଷ୍ଠ ବା ଅଷ୍ଟମରେ ଥାଇ ଲଗ୍ନେଶ ଶନିର ନବମାଂଶରେ ଥିଲେ ୫୮ ବର୍ଷ ଆୟୁହେବ । ୧୪ ।

.....................ଅଥୋସୌମ୍ୟଖେଷ୍ଟା,

ରନ୍ଧ୍ରାନା ଦେହନାଥୋବ୍ୟୟରନ୍ଧ୍ରଧନେ ପାପଯୁକ୍ ଷଷ୍ଠି ରିପୁଃ,
ରାଶୀଶୋଲଗ୍ନନାଥୋ ଦିନମଣି ସହିତୋମୃତ୍ୟୁଦୋବାକ୍‌ପତିଶ୍ଚେ—
ନ୍ନୋକେନ୍ଦ୍ରେ ଷଷ୍ଠି ରାଯୁର୍ବପୁଷିଦିନପତିଃଶକ୍ରଭୌମାନ୍ୱିତଶ୍ଚେତ୍ ।
ବାଗୀଶେହୀନବୀର୍ଯ୍ୟେ ବ୍ୟୟତନୁତ୍ରିଗତେ ଯାମିନୀଶେ ଖଶୈଳ । ୧୫ ।

ଅର୍ଥ:—ଶୁଭଗ୍ରହମାନେ ଅଷ୍ଟମ ଛଡା ଅନ୍ୟଭାବରେ ଥିବେ ଏବଂ ପାପଗ୍ରହସହ ଲଗ୍ନେଶ ଦ୍ୱାଦଶ, ଷଷ୍ଠ ଓ ଅଷ୍ଟମରେ ଥିଲେ ୬୦ ବର୍ଷ ଆୟୁହେବ । ପୁଣି ଜନ୍ମରାଶିର ଅଧିପତି ଓ ଲଗ୍ନେଶ ରବିସହ ଅଷ୍ଟମରେ ଥାଇ ବୃହସ୍ପତି କେନ୍ଦ୍ର ଭିନ୍ନ ଅନ୍ୟ କୌଣସି ଠାରେ ଥିଲେ ୬୦ ବର୍ଷ ଆୟୁହେବ । ଶୁକ୍ର, ଶନି ଓ ମଙ୍ଗଳ ସହ ରବି ଲଗ୍ନସ୍ଥ ହୋଇଥିବେ, ବୃହସ୍ପତି ହୀନବଳୀ ହୋଇଥିବ ଏବଂ ଚନ୍ଦ୍ର ଦ୍ୱାଦଶ ବା ପଞ୍ଚମରେ ଥିଲେ ୭୦ ବର୍ଷ ଆୟୁହେବ । ୧୫ ।

ଧର୍ମେ ସର୍ବୈଃ ପରମାୟୁଃ ଖଳଖଗଲବର୍ଗୈଃ କେନ୍ଦ୍ର ଯାତୈରଶୀତିଃ ।
କ୍ରୂରୈଃ କ୍ରୂରର୍କ୍ଷ୍ୟ ଯାତୈଃ ଶୁଭଭବନ ଗତୈଃ ସୌମ୍ୟଖେଟୈଃ-
ସବୀର୍ଯ୍ୟେ ।
ଲଗ୍ନେଶେସ୍ୟାତ୍ ପରମାୟୁଃ ସୁତଭବନ ଗତୈଃ ଷଷ୍ଟିରାୟୁ—
ର୍ନରାଣାମ୍ । ୧୬ ।

ଅର୍ଥ:—ସମସ୍ତଗ୍ରହ ନବମରେ ଥିଲେ ପୂର୍ଣ୍ଣାୟୁ ହୁଏ । ସେହିପରି ସମସ୍ତଗ୍ରହ ପାପଗ୍ରହର ନବମାଂଶରେ ଥାଇ କେନ୍ଦ୍ରସ୍ଥ ହେଲେ ୮୦ ବର୍ଷ ପରମାୟୁ ହୁଏ । ପୁଣି ପାପରାଶିରେ ପାପଗ୍ରହ ଓ ଶୁଭରାଶିରେ ଶୁଭଗ୍ରହ ଥାଇ ଲଗ୍ନେଶ ପୂର୍ଣ୍ଣ-ବଳୀ ହେଲେ ପୂର୍ଣ୍ଣାୟୁହେବ । ଯଦି ସମସ୍ତ ଗ୍ରହ ପଞ୍ଚମରେ ଥାନ୍ତି, ତେବେ ୬୦ ବର୍ଷ ଆୟୁହୁଏ । ୧୬ ।

ସ୍ୟାରଙ୍ଗ ସ୍ୟାନ୍ତ୍ୟଭାଗେଯଦି ବପୁଷି ଗତେତଗ୍ନେଦ୍ୟଭାଗେବକେନ୍ଦ୍ରେ
ସୌମ୍ୟୈଃ ଖେଟୈଃ ଶତଂସ୍ୟାତ୍ ବସୁସହଜସୁଖେସ୍ୟାଦ୍ଭିରାୟୁଃ—
ସମସ୍ତୈଃ ।
ଲଗ୍ନାତ୍ ପ୍ରାଲେୟଭାନୋର୍ନିଧନ ସଦନଗେ ରିଃଫକେନ୍ଦ୍ରେ ଷ୍ଟବାଂଶାତ୍
କେନ୍ଦ୍ରେ ସୌମ୍ୟ ଗ୍ରହୋନେ ଯଦିମୃତଭବନେ ଦଣ୍ଡିଦାସ୍ତେ-
ଖରାମାଃ । ୧୭ ।

ଅର୍ଥ:—ଧନୁର ଶେଷ ନବାଂଶରେ ଲଗ୍ନହୋଇ ଶୁଭଗ୍ରହମାନେ କେନ୍ଦ୍ରସ୍ଥ ହୋଇଥିଲେ ୧୦୦ ବର୍ଷ ଆୟୁହେବ । ଯଦି

ସମସ୍ତ ଗ୍ରହ ଅଷ୍ଟମ, ତୃତୀୟ ଓ ଚତୁର୍ଥରେ ଥିବେ ତେବେ ଦୀର୍ଘାୟୁ ହେବ । ଲଗ୍ନ ବା ଚନ୍ଦ୍ରଠାରୁ ଅଷ୍ଟମେଶ ଦ୍ୱାଦଶ ବା କେନ୍ଦ୍ରରେ ଥିଲେ ୨୮ ବର୍ଷ ଅୟୁ ହୁଏ । କେନ୍ଦ୍ରରେ ଶୁଭଗ୍ରହ ନ ଥାଇ ଅଷ୍ଟମରେ ଯେ କୌଣସି ଗ୍ରହ ଥିଲେ ମୃତ୍ୟୁ ୩୦ ବର୍ଷ ଅୟୁର୍ଭୋଗ ହେବ । ୧୭ ।

କ୍ଷୀଣେପ୍ରାଲେୟୁ ଭାନୌ ଯଦଖଳଖଚରୈ ମୃତ୍ୟୁଗୋମୃତ୍ୟୁନାଥଃ
କେନ୍ଦ୍ରସ୍ଥୋ ଲଗ୍ନନାଥୋ ନିଜବଳରହିତଃ ଖାଶ୍ୱିଭୁଲ୍ୟଂତଦାୟୁଃ ।
ସୌମ୍ୟୈର୍ବ୍ୟଗ୍ରପୋକ୍ଳିମସ୍ଥୈର୍ଦିନମଣିଜବଧୂ ବୈଶରନ୍ଧ୍ରାଳୟସ୍ଥୌ
ଭୁଲ୍ୟଂକାମାଂକୁଷୈଃସ୍ୟାଦଥ ଧନମୃତଗୌବିଃଫଗୌ—

ଯାପଖେଚରୌ । ୧୮ ।

ହୀନୌସ୍ୱର୍ଭାନୁନାବା ଯଦହିମମହସ୍ମା ବ୍ୟୋମନେବ ପ୍ରମାଣଂ
କେନ୍ଦ୍ରସ୍ଥୌ ସୂର୍ଯ୍ୟମନ୍ଦୌ ଯଦବପୁଷି କୁଜଃ ପୁଷ୍ପବାଣାଙ୍କଶସ୍ୟାତ୍ ।
ଶୁକ୍ରେଜ୍ୟାବଙ୍ଗଯାତୌ ତନୟଭବନଗୌଚେଭୌମପାପାବନାୟୁଃ
ଜନ୍ମେଶଃ ସାର୍କଲଗ୍ନେ ଖଳଶୁଭ ସହିତଶ୍ଚେକ୍ଷିତଃସ୍ୟାଦନାୟୁଃ । ୧୯।

ଅର୍ଥ:—ଯାହାର ଜନ୍ମସମୟରେ ଚନ୍ଦ୍ର କ୍ଷୀଣ ହୋଇଥିବ, ପାପଗ୍ରହ ଅଷ୍ଟମରେ ଥିବ ଏବଂ ଅଷ୍ଟମେଶ କେନ୍ଦ୍ରସ୍ଥ ହୋଇ ଲଗ୍ନେଶ ବଳହୀନ ହୋଇଥିବ ତାହାର ୨୦ ବର୍ଷରେହିଁ ମୃତ୍ୟୁ ହେବ । ସେହିପରି ଶୁଭଗ୍ରହ ଅପୋକ୍ଳିମ ସ୍ଥ ହୋଇ ଶନି, ଚନ୍ଦ୍ର ଷଷ୍ଠାଷ୍ଟମରେ ଥିଲେ ୨୦ ବର୍ଷ ଅୟୁ ହେବ । ପୁଣି

ରାହୁ ଚନ୍ଦ୍ର ଛଡା ପାପଗ୍ରହ ଦ୍ୱିତୀୟ, ଅଷ୍ଟମ ଓ ଦ୍ୱାଦଶରେ ଥିଲେ ଜାତକର ୨୦ ବର୍ଷ ଅୟୁ ରହେ, ଶନି ଓ ରବି କେନ୍ଦ୍ରରେ ଏବଂ ମଙ୍ଗଳ ଲଗ୍ନରେ ଥିଲେ ୨୦ ବର୍ଷରେ ଆୟୁ ଶେଷ ହୁଏ। ଶୁକ୍ର ଓ ବୃହସ୍ପତି ଲଗ୍ନସ୍ଥ ହୋଇ ପାପଯୁକ୍ତ ମଙ୍ଗଳ ପଞ୍ଚମସ୍ଥ ହେଲେ ଅଲ୍ପାୟୁ ହେବ। ସେହିପରି ରବିସହ କଳ୍କ- ରାଶିର ଅଧିପତି ଲଗ୍ନଗତ ହୋଇ ପାପଗ୍ରହ ବା ଶୁଭଗ୍ରହ- ଦ୍ୱାରା ଦୃଷ୍ଟ ହେଲେ ଅଲ୍ପାୟୁ ହେବ। ୧୮—୧୯।

## ସୂର୍ଯ୍ୟନକ୍ଷତ୍ରରୁ-ଆୟୁବିଚାର

ଯସ୍ମିନ୍ନୃକ୍ଷେସ୍ଥିତୋ ଭାନୁସ୍ତଦା ଦିବିଣିମସ୍ତକେ
ଆନନେ ପଞ୍ଚଋକ୍ଷାଣି ରେକୈକଂ ସ୍କନ୍ଧୟୋର୍ଦ୍ୱୟୋଃ।
ବାହ୍ୱାରପି ତଥୈକେକଂ ଦ୍ୱୈକେକଂ ପାଣିପଲ୍ଲବେ
ହୃଦୟେ ପଞ୍ଚଋକ୍ଷାଣି ନାଭିବେକଂ ପ୍ରକୀର୍ତ୍ତିତମ୍।
ଗୁଦେଚୈକଂ ତଥାହ୍ୟେବ ମେକୈକଂ ଜାନୁମଣ୍ଡଳେ
ନକ୍ଷତ୍ରାଣି ଚ ଶେଷାଣି ଯୁଗପାଦେ ନଯୋଜୟେତ୍।

ଫଳ :-

ମୁଖେ ଶୀର୍ଷେ ଶତବର୍ଷଂ ନବତିସ୍କନ୍ଧୟୋର୍ଦ୍ୱୟୋଃ
ପଞ୍ଚାଶୀତି ହୃଦୟେପ୍ରୋକ୍ତଂ ହସ୍ତୟୋଃସପ୍ତତିଃକମାତ୍
ବାହ୍ୱୋଷଷ୍ଟିବର୍ଷାଣି ଗୁଦେଚ ଷଷ୍ଟିକାୟୁଷାଃ

ପଞ୍ଚାଶିତ୍ପୃଦ୍ଧ୍ୟୋଃପଦେ ଜାଙ୍ଘିନଃ ସ୍ୱଳ୍ପଜୀବନଃ ।

କାଳାଖ୍ୟ ପୁରୁଷାଦେବଂ ପରମାୟୁଃ ନିରୂପଣମ୍ ।

ଅର୍ଥାତ୍:—ଚଗୋଟିଏ କାଳପୁରୁଷ ନଗ୍ନଚିତ୍ରରେ ଉତ୍ୟାରକଣ୍ଠ ସେଥିରେ ନିମ୍ନଲିଖିତ ହିସାବରେ ନକ୍ଷତ୍ର ସ୍ଥାପନ କରିବେ । ଜନ୍ମ-ସମୟରେ ରବି ଯେଉଁ ନକ୍ଷତ୍ରରେ ଥିବେ ସେଠାରୁ ଆରମ୍ଭକରି ମସ୍ତକରେ ତିନିଗୋଟି ନକ୍ଷତ୍ର, ମୁଖରେ ପାଞ୍ଚ-ଗୋଟି ନକ୍ଷତ୍ର, ଦୁଇସ୍କନ୍ଧରେ ଦୁଇଗୋଟି, ଦୁଇବାହୁରେ ଦୁଇଗୋଟି, ଦୁଇହାତ୍ ଓ କରତଳରେ ଦୁଇଗୋଟି, ହୃଦୟରେ ପାଞ୍ଚଗୋଟି, ନାଭିରେ ଗୋଟିଏ, ଗୁହ୍ୟେ ଗୋଟିଏ, ଦୁଇଜାନୁରେ ଦୁଇଗୋଟି, ଏବଂ ଅବଶିଷ୍ଟ ନକ୍ଷତ୍ର ସବୁ ପାଦରେ ସ୍ଥାପନ କଲାପରେ ଜନ୍ମ ନକ୍ଷତ୍ରକୁ ଧରି ଆୟୁବିଗ୍ଭର କରିବେ । ଜନ୍ମନକ୍ଷତ୍ର ଏହି କାଳପୁରୁଷର ମସ୍ତକ ବା ମୁଖରେ ପଡିଲେ ୧୦୦ ବର୍ଷ ପରମାୟୁ, ସେହିପରି ଦୁଇସ୍କନ୍ଧରେ ପଡିଲେ ୯୦ ବର୍ଷ, ହୃଦୟରେ ପଡିଲେ ୫୦ ବର୍ଷ, ଦୁଇ ହସ୍ତରେ ପଡିଲେ ୭୦ ବର୍ଷ ଦୁଇ ବାହୁରେ ପଡ଼ିଲେ ୬୬ ବର୍ଷ, ଗୁହ୍ୟରେ ପଡ଼ିଲେ ୬୦ ବର୍ଷ, ଦୁଇ ଜାନୁରେ ପଡିଲେ ୫୦ ବର୍ଷ ଏବଂ ଦୁଇପାଦରେ ଜନ୍ମନକ୍ଷତ୍ର ପଡିଲେ ଜାତକ ଅଳ୍ପାୟୁ ଓ ନିର୍ଦ୍ଧନ ହୁଏ ।

## ମୂଳତଃ ବିବିଧ ଅଙ୍କ-ପ୍ରମାଣ ବର୍ଗୀର

### ୩୩ ବର୍ଷ ଆୟୁ

ଚନ୍ଦ୍ରେ କୁଜର୍କ୍ଷେ ତନୁଗେ ପ୍ରସୂତେ-
କ୍ରୂରଗ୍ରହୈଃଶୋଭନ ଖେଚରେନ୍ଦ୍ରୈଃ ।
କେନ୍ଦ୍ରାତ୍ ବହିସ୍ଥୈର୍ନିଧନଂ ପ୍ରୟାତି
ବର୍ଷୈସ୍ତ୍ରୟସ୍ତ୍ରିଂଶ ସମାନକୈସ୍ତୁ ।

ତଥାଚ:-

ପାପଗ୍ରହେ ରନ୍ଧ୍ରପତୌ ସଙ୍ଗେନ୍ଦ୍ରେ
କେନ୍ଦ୍ରସ୍ଥିତେ ବା ଯଦି ବା ତ୍ରିକୋଣେ ।
ନାସ୍ତିସ୍ଥିତେ ପାପଖଗୈର୍ନଭସ୍ଥୈଃ
ନରସ୍ତ୍ରୟସ୍ତ୍ରିଂଶ ଦୁପୈତିବର୍ଷମ୍

### ୩୪ ବର୍ଷଆୟୁ

ଗୁରୁଶୁକ୍ରୌ ଚ କେନ୍ଦ୍ରସ୍ଥୌ ଲଗ୍ନେଶେ ପାପସଂଯୁତେ
ଅପୋକ୍ଲିମସ୍ଥେ ସନ୍ଧ୍ୟାୟାଂ ମାନୁଃଷଟ୍ତ୍ରିଂଶ ଦେବହି ।

### ୩୬ ବର୍ଷଆୟୁ

କ୍ରୂରଗ୍ରହେ ଲଗ୍ନଗତେ ତଦୀଶେ
ସୁଗ୍ରସ୍ଥିତେ ଦେବଗୁରୌ ରନ୍ଧ୍ରସ୍ଥେ ।

ଜାତସ୍ତୁ ମୃତ୍ୟୁଂ ମୁନିବହ୍ନିବର୍ଷୈଃ,

ପ୍ରଯ୍ୟାତଶାସ୍ତ୍ରଜ୍ଞପରୈଃ ପଦାଷ୍ଟମ୍ ।

### ୪୦ ବର୍ଷଆୟୁ

ଲଗ୍ନେଶ୍ୱରେ ରନ୍ଧ୍ରଗତେ ସପାପେ

କେନ୍ଦ୍ରାତ୍ରିବହ୍ନିସ୍ଥେ ଯଦସୌମ୍ୟଖେଟେ ।

ଚତ୍ୱାରିଂଶତ୍ତ୍ରିବର୍ଷରେ ମୃତ୍ୟୁମେତ

ଜାତଃପୁମାନୋନାନ୍ୟଥାଶାସ୍ତ୍ରମେତତ୍ ।

### ୪୨ ବର୍ଷଆୟୁ

ସଭୂମିଜେ ରନ୍ଧ୍ରପତୌ ବିଲଗ୍ନେ

ସ୍ୱଶୌଚ୍ଛିତେ ବା ଯଦି ବା ଧରାଜେ ।

ରିଃଫେଷ୍ଟମେ ମୃତ୍ୟୁମୁପୈତିଜାତ-

ସ୍ତ୍ୟେନ୍ଦ୍ୱିଚତ୍ୱାରି ସମାନକୈର୍ବା ।

ପୁନଃ

କେନ୍ଦ୍ରେ ଗୁରୌକର୍ମଣି ସୂର୍ଯ୍ୟପୁତ୍ରେ ଲଗ୍ନେଚରେ ଯୁଗ୍ମଯୁଗୈଃସମାନୈଃ ।

### ୪୪ ବର୍ଷଆୟୁ

ସ୍ୱୋଚ୍ଚେବିଲଗ୍ନେ ଷଡନନ୍ଦନେଚ

ଜୀବେଽସ୍ତଗେ କର୍ମଣିସୂର୍ଯ୍ୟପୁତ୍ରେ ।

ଜାତୋଧନାଢ୍ୟୋ ବହୁଶାସ୍ତ୍ର ବେତ୍ତା
ବେଦାବ୍ଧିବର୍ଷୈର୍ନିଧନଂ ପ୍ରଯାତି ।

୪୭ ବର୍ଷଅସ୍ତୁ

ମେଷେ ଶଶାଙ୍କେ ତନୁଗେ ସୁପୂର୍ଣ୍ଣେ
ସୌମ୍ୟେକ୍ଷିତେ ଭୂପତିରତ୍ରଜାତଃ ।
ପାପଗ୍ରହାଣାଂ ଚ ଦୃଶା ବିହୀନେ
ନଗାବ୍ଧିବର୍ଷୈର୍ନିଧନଂ ପ୍ରଯାତି ।

୫୭ ବର୍ଷଅସ୍ତୁ

ଶୁକ୍ରେଽମ୍ବରେ ଲଗ୍ନଗତେଽଙ୍ଗମସ୍ଥେ
ଭୌମେ ସରାହୌ ମୁନିବାଣବର୍ଷୈଃ ।

୬୦ ବର୍ଷଅସ୍ତୁ

ଗୁରୌ ବିଲଗ୍ନେ ହିବୁକେ ଶଶାଙ୍କେ
କୁଙ୍କେ କଳତ୍ରେ ଗଗନେ ଦିନେଶେ ।
ଙ୍କବର୍ଜ୍ୟସୌମ୍ୟେଷ୍ୱପି ଚୈର୍ଯ୍ୟଗେଷୁ
ନରେଶ୍ୱରୋ ଜୀବତି ବର୍ଷଷଷ୍ଟ୍ୟା ।

୬୫ ବର୍ଷଅସ୍ତୁ

ଚନ୍ଦ୍ରେ ବିଲଗ୍ନେ ସ୍ୱଗୃହେ ପ୍ରଯାତେ
ନୀଚେଶତୋ ଭାସ୍କରଃ ସପ୍ତମେଚ ।

ଅପି ନ୍ଜାଠତା ମାନୁଷୋଦ୍ଧୃତ ମୁଖେଷ୍ୟା
ଜୀବେତ୍ତ୍ଷଷ୍ଟିଃ ପଞ୍ଚଭିଃ ସଂପ୍ରଯୁକ୍ତାଃ ।

## ୬୬ ବର୍ଷଆୟୁ

ଜୀବେବଲଟ୍ରେ ବୁଧସୁର୍ଯ୍ୟଯୁକ୍ତେ
ମୀନେଶନୌଦ୍ୱାଦଶ ଶୀତରଶ୍ମୌ ।
ଜାତ ଯୋଗେ ଗୃହଁବାନ୍ ମୃତ୍ୟୁଭୁକ୍ତ
ଜୀବେତ୍ତ୍ଷଷ୍ଟ୍ୟା ଷଟ୍ସହାଯୋ ମନୁଷ୍ୟଃ ।

## ୬୮ ବର୍ଷଆୟୁ

ନକ୍ଷତ୍ରମାଥ ସହୃତଃ ସବଡା ନଭସ୍ଥଃ
ସୌରିବଲଗ୍ନ ସହୃତୋହୃଦୃକେ ସୁରେଜ୍ୟଃ ।
ଅପି ନ୍ ଯୋଗେ କାଯ୍ୟମାନୋମନୁଷ୍ୟଃ
ଷୌଣୀପତନୈର୍ଧନମଷ୍ଟଷଷ୍ଟ୍ୟାମ୍ ।

## ୭୦ ବର୍ଷ ଆୟୁ

ମୀଚେମଣ୍ଡେ କେନ୍ଦ୍ରଗେବା ନିକୋଣେ
ସୌମ୍ୟେ କେନ୍ଦ୍ରେ ଭାସ୍କରେ ବା ସଉୌମ୍ୟେ ।
ଯୋଗେ ଜାତଃ ପଣ୍ଡିତୋଧର୍ମ୍ମଶୀଳେ
ଜ୍ଞାନୀଖ୍ୟାତଃ ସପ୍ତତେ ବଂହସତ୍ୱଣାମ୍ ।

ତଥାଚ:—

ପଞ୍ଚମସ୍ଥେ ଧିଗ୍ରସୁନୌ ନାଚେମଦୈସ୍ତରେ ରବୌ
ଅସ୍ମିନ୍ ଯୋଗେ ମନୁଷ୍ୟସ୍ତୁ ସପ୍ତତ୍ୟାଂ ନିଧନଂ ବ୍ରଜେତ୍ ।

## ୭୪ ବର୍ଷଆୟୁ

ଲଗ୍ନେ କେନ୍ଦ୍ରେ ଶଶିସୁତେ କୋଣେ ଚନ୍ଦ୍ରଗୁରେ ଶନୌ
ଜାତସ୍ତୁ ବେଦମୁନିଭିର୍ବର୍ଷୈଃ କ୍ଲିଶ୍ୟତ୍ୟତଃ ମୁଖମ୍ ।

## ୮୦ ବର୍ଷଆୟୁ

ଲଗ୍ନାଦଷ୍ଟକେ ଶୁଭଖେଚରେନ୍ଦ୍ରାଃ
ସର୍ବେବଲାଢ୍ୟାସ୍ତ୍ୱପରେତୁ ପାପାଃ ।
ପ୍ରଦୀପ୍ତମନ୍ତ୍ରୋ ଗୁଣବାନ୍ ସୁଶୀଲଃ
ଶ୍ରୀମାନଶୀତ୍ୟା ନିଧନଂ ପ୍ରୟାତି ।

ଜୀବେ ସଚନ୍ଦ୍ରେ କେନ୍ଦ୍ରସ୍ଥେ ସୌମ୍ୟଦୃଷ୍ଟେଃପରେଗ୍ରହାଃ
ଦଶମାତ୍ ପରତୋୟକ୍ତାସ୍ତ୍ୱଶୀତ୍ୟା ନିଧନଂ ଭବେତ୍ ।

## ୮୬ ବର୍ଷଆୟୁ

ଚତୁଷ୍ଟୟଗତାଃ ସୌମ୍ୟାଃ ପାପାଷ୍ଟାଷ୍ଟମ ବର୍ଜିତାଃ
ଚନ୍ଦ୍ରୋବଲଗ୍ନାତ୍ ଷଷ୍ଠସ୍ଥ ଷଡଶୀତ୍ୟା ଯମଂବ୍ରଜେତ୍ ।

## ୧୦୦ ବର୍ଷାୟୁ

କେନ୍ଦ୍ରେ ଗୁରୌ ଲଗ୍ନଗତେ ଧନେଶେ
ଭୂସୂନୁଯୁକ୍ତେ ଯଦବା ମୃଗସ୍ଥେ ।

ଜାତଶ୍ଚିରାୟୁଂପ୍ରାପ୍ତଗୁଣାଧିକାଶ୍ଚ
ସୁଖୀତ୍ତୁ ଜୀବେଚ୍ଛରଦାଂଶତଂବୈ ।

ଭୃଗୌଚତୁର୍ଥେ ସଗୁରୌବିଲଗ୍ନେ
ସେନ୍ଦୌଶନୌ କର୍ମଣି ପାପହୀନେ ।

ଜାତୋନରୋଽସ୍ମିନ୍ ସମୁପୈତିଦୀର୍ଘଂ
ଆୟୁଶ୍ଚ ବିଦ୍ୟାଂ ଯଶସା ସମେତ ।

ଲଗ୍ନେମୃଗପରାର୍ଦ୍ଧେତୁ ପୂର୍ବାର୍ଦ୍ଧେ ଭୌମ ସଂଯୁତେ
ନୃଯୁଗ୍ମପୂର୍ବାର୍ଦ୍ଧଗତେ ଭୌମଲଗ୍ନେ ତ୍ୱପରାର୍ଦ୍ଧକେ ।
ଗୃପପୂର୍ବାର୍ଦ୍ଧଗେଜୀବେ ଲଗ୍ନେତ୍ୱପର ଭାଗଗେ
କନ୍ୟାପୂର୍ବାର୍ଦ୍ଧଗେ ସୌମ୍ୟେ ପରାର୍ଦ୍ଧେ ଲଗ୍ନମାଗତେ ।
ପାପସ୍ତ୍ରିଷଷ୍ଠଲାଭସ୍ଥାଃ ସୌମ୍ୟେଲଗ୍ନାନ୍ତ୍ୟଭାଗଗେ ।
ଗ୍ରହୈସ୍ତ୍ରିଭିର୍ବାସ୍ୱୋଚ୍ଚସ୍ଥୈଃ ଶତାୟୁସ୍ତୁପରଂବୟୁଃ ।

## ୧୦୮ ବର୍ଷଆୟୁ

ମୀନାନ୍ତ୍ୟ ଲଗ୍ନେଖଚରୈଶ୍ଚତୁର୍ଭିଃ
କେନ୍ଦ୍ରସ୍ଥିତୈର୍ନାଗଶତଂ ସଜୀବେତ୍ ।

ନାଶାଂକରେ ଲଗ୍ନଗତେ ସ୍ୱଭାଂଶେ

ମୀନସ୍ଥିତେବା ଯଦବାକୁଳୀରେ ।

ଗ୍ରହୈର୍ବିହୀନେ ଖଚରୈଶ୍ଚତୁର୍ଭିଃ

କେନ୍ଦ୍ରସ୍ଥିତୈର୍ନାଶଗତଂ ସଜୀବେତ୍ ।

ସିଂହେ ବିଲଗ୍ନେ ଖଚରୈଶ୍ଚତୁର୍ଭିଃ

ନିକୋଣଗୈର୍ଜୀବତିତାବ ଦେବ ।

ନୃଯୁଗ୍ମପୂର୍ବାର୍ଦ୍ଧଗତେ ଧରାସୁତେ

ଲଗ୍ନେପରାର୍ଦ୍ଧେ ସଗୁରୌତ୍ୱଶେଷାତ୍ ।

କେନ୍ଦ୍ରେ ହିଜ୍ଞବଦ୍ଭ୍ୟାଂ ସହିତେନ ଜାତଃ

ଶତାତ୍ପରଂ ଜୀବତି ପୁଣ୍ୟଭାକ୍ ଚ ।

## ୧୨୦ ବର୍ଷ ଆୟୁ

ଅନିମିଷ ପରମାଂଶକେ ବିଲଗ୍ନେ

ଶଶିତନୟେ ଗବପଞ୍ଚବର୍ଗଲିପ୍ତେ ।

ଭବତିହି ପରମାୟୁଷଃ ପ୍ରମାଣଂ

ଯଦି ସକଳାଃ ସହିତାଃ ସ୍ୱତୁଙ୍ଗଭେଷୁ ।

( ଅନିମିଷ-ମୀନ,ପରମାଂଶକ-ନବମ ନବାଂଶକ, ବିଲଗ୍ନ-) ଅର୍ଥାତ୍ ମୀନରାଶିର ନବମ ନବାଂଶରେ ଯଦି ଲଗ୍ନହୁଏ, ସେହି ସମୟରେ ବୁଧ ବୃଷରାଶିରୁ ୨୫ କଳା ଯଦି ଭୋଗ କରିଥାଏ ଏବଂ

ଅନ୍ୟାନ୍ୟ ଗ୍ରନ୍ଥମାନେ ଯଦ ପରସ୍ପରରେ ଥାନ୍ତି ତେବେ ଜାତକର ୧୨୦ ବର୍ଷ ପରମାୟୁ ଭୋଗେ ।

### ୨୦୦୦ ବର୍ଷଆୟୁ

ଏକାଂଶସ୍ଥା ବୁଧ ଶୁକ୍ର ମନ୍ଦା
ଧର୍ମେସ୍ଥିତା ଲଗ୍ନମୁପାଗତା ବା ।
ଷଷ୍ଠାଷ୍ଟମେ ବା ହିମଗୁଶ୍ଚ ଯସ୍ୟ
ସହସ୍ରବର୍ଷଦ୍ୱୟମସ୍ୟଜନ୍ତୋଃ ।

ଅର୍ଥାତ୍:—ବୁଧ, ଶୁକ୍ର ଓ ଶନି ସମାନ ଅଂଶ କଳାଦରେ ବା ଏକ ନବାଂଶରେ ଥାଇ ଲଗ୍ନ ବା ନବମସ୍ଥ ହୋଇଥିବେ । ଏବଂ ଚନ୍ଦ୍ର ଷଷ୍ଠ ବା ଅଷ୍ଟମସ୍ଥ ହୋଇଥିଲେ ଜାତକ ୨୦୦୦ ବର୍ଷ ପରମାୟୁ ଭୋଗକରେ ।

### ଶଙ୍ଖ ଯୋଗ

ଲଗ୍ନାଧିପୋଽତିବଳବାନ୍ ଶୁଭବର୍ଗଯୁକ୍ତଃ
ସ୍ୱୋଚ୍ଚେ ସୁହୃତ୍ ଗୃହଗତଃ ସ୍ୱନବାଂଶକେ ବା ।
ଲଗ୍ନାଧିପେ ଶୁଭଯୁତେ ଯଦ ତୁଙ୍ଗଭାଗେ
କେନ୍ଦ୍ରତ୍ରିକୋଣ ସହିତେ ଶୁଭଦୃଷ୍ଟିଯୁକ୍ତେ ।
କର୍ମାଧିପେନ ସହିତେ ଯଦବା ସ୍ୱଗେହେ
ସଦ୍‌ଭାଗ୍ୟକୀର୍ତ୍ତି ଧନଧାନ୍ୟଶଙ୍ଖଯୁତେତ ।

ଅର୍ଥାତ୍:—ଲଗ୍ନେଶ ବଳଶାଳୀ ହୋଇ ଶୁଭବର୍ଗ, ଉଚ୍ଚସ୍ଥ, ମିତ୍ରଗୃହୀ ଓ ନିଜ ନବମାଂଶସ୍ଥ ହେଲେ, କିମ୍ବା ସେହି ଲଗ୍ନେଶ ଶୁଭଗ୍ରହ ସହ କେନ୍ଦ୍ର, ତ୍ରିକୋଣରେ ତୁଙ୍ଗସ୍ଥ ହୋଇ ଶୁଭଦୃଷ୍ଟି ପାଉଥିଲେ ଜାତକକୁ ସଦ୍‌ଭାଗ୍ୟ ବିମଣ୍ଡିତ କରି ଚିରସୁଖ ଭୋଗ କରାଏ ।

ଯୁଗାନ୍ତର ଆୟୁଯୋଗ:—

ଜୀବାଂଶସ୍ଥା ସକଳ ଗ୍ରହେନ୍ଦ୍ରାଃ
କେନ୍ଦ୍ରସ୍ଥିତା ଧର୍ମଧନାଶ୍ରିତା ବା ।
ଜାତୋନରଃ ପ୍ରବ୍ରଜିତଃସର୍ବାଲ୍ୟେ
• ଯୁଗାନ୍ତମାୟୁଃ ବହୁଶାସ୍ତ୍ରକର୍ତ୍ତା ।

ଅର୍ଥାତ୍:—ଯଦି ସବୁଗ୍ରହମାନେ ବୃହସ୍ପତିଙ୍କ ନବାଂଶରେ ଥାଇ କେନ୍ଦ୍ରରେ ଅଥବା ଧର୍ମ ଓ ଧନସ୍ଥାନରେ ଥାନ୍ତି, ତେବେ ଜାତକ ବାଲ୍ୟକାଳରୁ ସନ୍ୟାସୀ ହୋଇ ଯୁଗାନ୍ତର ଆୟୁଭୋଗକରେ ଏବଂ ବହୁଶାସ୍ତ୍ର କର୍ତ୍ତା ହୁଏ ।

**ସୂତ୍ର:-ଏବଂ ମନ୍ଦଚନ୍ଦ୍ରାଭ୍ୟାମ୍ । ୫ ।**

**ପିତୃକାଲତଶ୍ଚ । ୬ ।**

ଅର୍ଥ:—ଏହିପରି ଲଗ୍ନ ଓ ଚନ୍ଦ୍ରଠାରୁ ବା ଶନିଚନ୍ଦ୍ରଠାରୁ ଏବଂ ଲଗ୍ନ ଓ ହୋରାଲଗ୍ନଠାରୁ ଆୟୁସ୍ଥିର କରିଯାଏ । ଚନ୍ଦ୍ର ଯଦି ଲଗ୍ନରେ

ବା ଲଗ୍ନର ସପ୍ତମରେଥାଏ ତେବେ ଲଗ୍ନ ଚନ୍ଦ୍ର ଠାରୁ ନଚେତ୍ ଶନି ଚନ୍ଦ୍ର ଠାରୁ ଆୟୁ ବିଚାର କରାଯିବ ।

ସେହିପରି ପରାଶର ମଧ୍ୟ:---

"ପୂର୍ବବଦ୍ଭିନ୍ନ ଚନ୍ଦ୍ରାଭ୍ୟାମାୟୁର୍ଯୋଗଂ ବଦନ୍ତ୍ୟେତ୍ ।
ଜନ୍ମେନ୍ଦୌବା ସ୍ଥିତେତ୍ୟୂନେ ଗୃନ୍ୟଥେମନ୍ଦଚନ୍ଦ୍ରୟୋଃ ।"

## ସୂତ୍ର:--ସମ୍ବାଦାତ୍ ପ୍ରାମାଣ୍ୟମ୍ । ୭ ।

ଅର୍ଥ:---ଉପରୋକ୍ତ ତିନି ପ୍ରକାର ( ଲଗ୍ନେଶାଷ୍ଟମେଶ ଲଗ୍ନ ଚନ୍ଦ୍ର ।ବ ଶନି ଚନ୍ଦ୍ର ଓ ଲଗ୍ନ ହୋରାଲଗ୍ନ ) ଆୟୁବିଚାରରେ ସବୁ-ଯାକ ଯଦି ସମାନ ଆସେ ' ତେବେ କାଃସନ୍ଦେହରେ ସେହି ଆୟୁସ୍ଥିର କରିବେ । ଅର୍ଥାତ୍---ଯଦି ତିନୋଟି ଯାକ-ଦୀର୍ଘାୟୁ ହୁଏ ତେବେ ଦୀର୍ଘାୟୁ ବୋଲିସ୍ଥିର କରାଯିବ । ସେ ମଧ୍ୟରୁ ଦୁଇଟି ଦୀର୍ଘାୟୁ ହେଲେ ମଧ୍ୟ ଦୀର୍ଘାୟୁ-ରୂପେ ଗ୍ରହଣ କରିବେ । ସେହିପରି ତିନୋଟି ଯାକ କିମ୍ବା ଦୁଇଟି ମଧ୍ୟମାୟୁ ହେଲେ ମଧ୍ୟମାୟୁ ବୋଲି ସ୍ଥିର-କରାଯିବ, ଏବଂ ତିନୋଟି କିମ୍ବା ଦୁଇଟି ଅଳ୍ପାୟୁ ହେଲେ ତାହାକୁ ଅଳ୍ପାୟୁ ବୋଲି ସ୍ଥିର କରିବେ ।

## ସୂତ୍ର:--ବିସମ୍ବାଦେ ପିତୃକାଲତଃ । ୮ ।

ଅର୍ଥ:---ଯଦି ଉପର୍ଯ୍ୟୁକ୍ତ ତିନିପ୍ରକାରର ବିଭିନ୍ନ ହିସାବରେ ଆୟୁ-ଆସେ, ଅର୍ଥାତ୍---ଗୋଟିଏ ଦୀର୍ଘାୟୁ, ଗୋଟିଏ ମଧ୍ୟମାୟୁ

ଏବଂ ଅନ୍ୟଟି ଅଳ୍ପାୟୁ ହୁଏ,ତେବେ ଜନ୍ମଲଗ୍ନ ଓ ହୋରା-ଲଗ୍ନ ଦ୍ୱାରା ଯେଉଁ ଆୟୁ ବାହାରିଅଛି ତାହାହିଁ ଗ୍ରହଣ କରିବାକୁ ହେବ ।

ସୂତ୍ର:-ପିତୃଲାଭଗେଚନ୍ଦ୍ରେ ଚନ୍ଦ୍ରମନ୍ଦାଭ୍ୟାମ୍ । ୯ ।

ଅର୍ଥ:---କିନ୍ତୁ ଚନ୍ଦ୍ର ଯଦି ଲଗ୍ନରେ ବା ସପ୍ତମରେ ଥାଏ ତେବେ ଲଗ୍ନ ଓ ହୋରାଲଗ୍ନରୁ ଆଣୀତ ଆୟୁ ଗ୍ରହଣ ନ କରି ଲଗ୍ନ ଏବଂ ଚନ୍ଦ୍ର ଦ୍ୱାରା ଆଣୀତ ଆୟୁ ଗ୍ରହଣ କରିବାକୁ ହେବ ।

ଆୟୁର୍ଭେଦ ବିଷୟରେ:--

---

ଦୀର୍ଘାୟୁ, ମଧ୍ୟମାୟୁ ଓ ଅଳ୍ପାୟୁକୁ ମଧ୍ୟ ତିନି ବିଭକ୍ତ ଭାଗରେ କରାଯାଇଛି ।

ଯଥା:--

"ରସାଙ୍କେ (୯୬) ର୍ଗଜାଚନ୍ଦ୍ରଭିଃ (୧୦୮) ଶୂନ୍ୟମାର୍ତ୍ତଣ୍ଡ-
(୧୨୦) ସ୍ତ୍ରିଧା ଦୀର୍ଘମାୟୁଃ କଲୌ ସଂପ୍ରଦିଷ୍ଟମ୍ ।
ଚତୁଷଷ୍ଟି (୬୪) ବାହ୍ୱଦ୍ରୀ (୭୨) ଶ୍ରୀତ (୮୦)
ପ୍ରମାଣୈର୍ମତଂ ମଧ୍ୟମାୟୁର୍ନୃଣାଂ ବସ୍ତରୈଃସ୍ୟାତ୍ ।
ତଥା ଦ୍ୱିବହ୍ନି (୩୨) ଷଡ୍‌ବହ୍ନି (୩୬) ଶୂନ୍ୟାବ୍ଧି-
(୪୦) ବର୍ଷୈର୍ଭବେଦଳ୍ପ ମାୟୁର୍ନରାଣାଂ ଯୁଗାନ୍ତେ ।
ଅର୍ଥାତ୍-ଦୀର୍ଘାୟୁ ୯୬, ୧୦୮, ୧୨୦, ପର୍ଯ୍ୟନ୍ତ,
ମଧ୍ୟମାୟୁ ୬୪, ୭୨, ୮୦, ପର୍ଯ୍ୟନ୍ତ

ଅଳ୍ପାୟୁ, ୩୨, ୩୬, ୪୦, ପର୍ଯ୍ୟନ୍ତ

ଏଥିରେ ୩୨, ୩୬, ଓ ୪୦ କୁ ଯୋଗ ଖଣ୍ଡ ରୂପେ-
ଧରାଯାଇଛି ।

ଯଦି ତିନି ପ୍ରକାରରେ ଦୀର୍ଘାୟୁ ଯୋଗହୁଏ ତେବେ ୧୨୦ ବର୍ଷ, ଦୁଇ ପ୍ରକାରରେ ହେଲେ ୧୦୮, ଗୋଟିଏ ପ୍ରକାରରେ ୯୬ ବର୍ଷ । ଏହି ହିସାବରେ ତିନିପ୍ରକାର ଅଳ୍ପାୟୁ ଯୋଗର ପରିମାଣ ୩୨ ବର୍ଷ, ଦୁଇଟି ଯୋଗର ୩୬ ଗୋଟିଏ ମାତ୍ର ଅଳ୍ପାୟୁ ଯୋଗ ହେଲେ ୪୦ ବର୍ଷ । ମଧ୍ୟମାୟୁରେ ଲଗ୍ନାଧିପତି ଓ ଅଷ୍ଟମାଧିପତିରୁ ଯେତେବେଳେ ଆୟୁ ନିର୍ଣ୍ଣୟ କରାଯିବ ସେତେବେଳେ ୪୦ ବର୍ଷ ଖଣ୍ଡ, ଲଗ୍ନ ଚନ୍ଦ୍ରଠାରୁ ନିର୍ଣ୍ଣୟକଲେ ୩୬ ଏବଂ ଲଗ୍ନ ଓ ହୋରାଲଗ୍ନ ଠାରୁ ଆୟୁ ବିଚାର କଲେ ୩୨ ବର୍ଷ ଖଣ୍ଡକୁ ନେଇ ସାଧନ କରିବାକୁ ହେବ ।

## ଆୟୁର୍ବର୍ଷ ସ୍ପଷ୍ଟୀକରଣ:---

ପ୍ରଥମେ ଭାବସ୍ପଷ୍ଟ ଓ ଗ୍ରହସ୍ପଷ୍ଟ ଠିକ୍ କରି ପୂର୍ବୋକ୍ତ ସୂତ୍ରାନୁସାରେ କାହା କାହା ଠାରୁ ଆୟୁର୍ନିର୍ଣ୍ଣୟ କରାଯିବ ତାହା ଠିକ୍ କରିବେ । ପ୍ରତ୍ୟେକ ଆୟୁଯୋଗରେ କେବଳ ଦୁଇଟି ସ୍ଥାନରୁ ଆୟୁବିଚାର କରାଯାଏ । ଯଦି ଗୋଟିଏ ପ୍ରକାରେ ଆୟୁନିର୍ଣ୍ଣୟ ହୋଇ ଯାଉଥାଏ ତେବେ ସେଠାରେ ଦୁଇଟି ଯୋଗ କର୍ତ୍ତା (ଆୟୁଦାତା) (ଲଗ୍ନେଶ, ଅଷ୍ଟମେଶ ବା ଲଗ୍ନ ଚନ୍ଦ୍ର ପ୍ରଭୃତି) ହେବ ବୋଲି ନିଶ୍ଚୟ-କରିବେ । ସେ ଦୁହିଙ୍କର ଅଂଶାଦିକୁ ମିଶାଇ ମିଶାଣ ଫଳକୁ ଦୁଇରେ ଭାଗଦେବେ । ଦୁଇ ପ୍ରକାରେ ଆୟୁର୍ନିର୍ଣ୍ଣୟ କରିବାକୁ

ହେଲେ ସେଠାରେ ଗୃହେଶ ଯୋଗ କାଢ଼ିବା ହେବ । ସେହି ଗୃହେଶ ଯାକର ଅଂଶାଦିକୁ ମିଶାଇ ୪ରେ ଭାଗଦେବେ । ପୁଣି ଯଦି ତିନୋଟି-ଯାକରେ ଆୟୁ ସମାନ ହେଉଥାଏ, ତେବେ ତାର ଯୋଗ କରିବା ଛ' ହେବ ଏହି ଛ'ଟଯାକର ଅଂଶାଦିକୁ ମିଶାଇ ୬ ରେ ଭାଗ ଦେଇ, ସେହି ଲବ୍ଧି ଅଂଶାଦିକୁ ଯୋଗ ଖଣ୍ଡ ୩୨, ୩୬ ଏବଂ ୪୦ ରେ ଯଥାକ୍ରମରେ ଗୁଣିବେ ଅର୍ଥାତ୍-ଯଦି ଗୋଟିଏ ପ୍ରକାରରେ ( ଲଗ୍ନେଶ-ଓ ଅଷ୍ଟମେଶକୁଧରି ) ବାହାର କରୁଥାନ୍ତି ତେବେ ୩୨ ରେ ଗୁଣିବେ ସେହିପରି ଦୁଇ-ପ୍ରକାରରେ ( ଲଗ୍ନେଶ, ଅଷ୍ଟମେଶ ଓ ଲଗ୍ନ ଚନ୍ଦ୍ର ବା ଶନି,ଚନ୍ଦ୍ରକୁଧରି ) ବାହାର କରୁଥାନ୍ତି ତେବେ ୩୬ରେ ଗୁଣିବେ । ଯଦି ତିନିପ୍ରକାର ଯାକରେ ହେଉଥାଏ (ଲଗ୍ନେଶ ଅଷ୍ଟମେଶ ; ଶନି-ଚନ୍ଦ୍ର ଲଗ୍ନ ହୋରାଲଗ୍ନରୁ ଯଦି ସମାନ ଆୟୁହେଉଥାଏ) ତେବେ୪୦ରେ ଗୁଣି ଗୁଣନ ଫଳକୁ ୩୦ ରେ ହରିଲେ ଲବ୍ଧି ବର୍ଷମାସାଦି ଯାହା ପଡିବ, ତାକୁ ଅଳ୍ପାୟୁ ହୋଇଥିଲେ ଅଳ୍ପାୟୁ ଖଣ୍ଡରୁ ( ୩୨, ୩୬, ୪୦ ରୁ କ୍ରମରେ ଅର୍ଥାତ୍ ଗୋଟିଏ ଯୋଗଦ୍ୱାରା ୩୨, ଦୁଇଟି ଯୋଗରେ ୩୬ ଏହି ହିସାବରେ) ଫେଡିବେ, ମଧ୍ୟମାୟୁ ସାଧୁଥିଲେ ମଧ୍ୟମାୟୁ ଖଣ୍ଡରୁ (୬୪, ୭୨, ୮୦ ରୁ କ୍ରମହିସାବରେ ) ଦୀର୍ଘାୟୁରେ ଦୀର୍ଘାୟୁ ଖଣ୍ଡରୁ ( ୯୬ । ୧୦୮ । ୧୨୦ରୁ) ଫେଡିବେ । ଏହିସୂତ୍ର ଅନୁସାରେ ଫେଡ଼ାଣ ଫଳହିଁ ସ୍ପଷ୍ଟଆୟୁର୍ଦ୍ଦାୟ ହେବ ।

ପରାଶରଙ୍କ ମତରେ:—

"ଲଗ୍ନେଶାଦଷ୍ଟମେଶାଭ୍ୟାଂ ଯଦାୟୁର୍ଯୋଗସମ୍ଭବଃ
ଚତ୍ୱାରିଂଶାତ୍ମକଂ ଖଣ୍ଡଂ ସଗ୍ରାହ୍ୟଂ ଦ୍ୱିଜସତ୍ତମ ।"

ଲଗ୍ନାଧିପତି ଓ ଅଷ୍ଟମାଧିପତିରୁ ଯେତେବେଳେ ଆୟୁ ନିର୍ଣ୍ଣୟ କରାଯିବ ସେତେବେଳେ ୪୦ ବର୍ଷ ଖଣ୍ଡ ଆୟୁ ଗ୍ରହଣ କରିବ ।

"ବିଲଗ୍ନ ଚନ୍ଦ୍ରୟୋରନ୍ୟଦ୍ ଯଦାୟୁର୍ଯୋଗ ସମ୍ଭବଃ ।
ଷଟ୍‌ତ୍ରିଂଶଦାତ୍ମକଂ ଖଣ୍ଡଂ ସଗ୍ରାହ୍ୟଂ ଦ୍ୱିଜସତ୍ତମ ।"

ଯେଉଁଠାରେ ଲଗ୍ନ ଚନ୍ଦ୍ର ବା ଶନି ଓ ଚନ୍ଦ୍ର ଠାରୁ ଆୟୁ ନିର୍ଣ୍ଣୟ କରାଯାଏ, ସେତେବେଳେ ୩୬ ବର୍ଷ ଖଣ୍ଡ ଗ୍ରହଣ କରାଯିବ ।

"ବିଲଗ୍ନହୋରୟୋଶ୍ଚାପି ଯଦାୟୁର୍ଯୋଗଃ ସମ୍ଭବଃ
ଦ୍ୱାତ୍ରିଂଶଦାତ୍ମକଂ ଖଣ୍ଡମାୟୁର୍ଗ୍ରାହ୍ୟଂମହାମତେ ।"

ଲଗ୍ନ ଓ ହୋରାଲଗ୍ନଠାରୁ ଆୟୁ ନିର୍ଣ୍ଣୟ ହେଲେ ବ ୩୨ ବର୍ଷ ଆୟୁ ଖଣ୍ଡ ଗ୍ରହଣ କରିବ ।

"ଯୋଗତ୍ରୟେଷୁ ସ୍ୱଗତ୍ୟପଗଲ୍ପାୟୁର୍ଦ୍ୱିଜସତ୍ତମ
ଦ୍ୱାତ୍ରିଂଶାଙ୍କକଖଣ୍ଡଂଚ ସଗ୍ରାହ୍ୟଂବ୍ରହ୍ମଣୋଦିତମ୍ ।"

ତନୋଚିଯାକ ନିୟମାନୁସାରେ ଯେଉଁଠାରେ ଅଳ୍ପାୟୁ ନିର୍ଣ୍ଣୟ ହେବ ସେହିଠାରେ ୩୨ ବର୍ଷ ଆୟୁ ଗ୍ରହଣ କରାଯିବ । ପୁଣି:—

ଯେଉଁଠାରେ ମଧ୍ୟମାୟୁ ଯୋଗରେ ଜନ୍ମହେବାର ସ୍ଥିର ହୁଏ । ସେଠାରେ ତାର ଅଳ୍ପାୟୁର ପରିମାଣ ୩୨ ବା ୩୬ ବା ୪୦

ଠିକ କରି ଓ ଯେଉଁଠାରେ ଦୀର୍ଘାୟୁ ସ୍ଥିର ହେବ ସେଠାରେ ମଧ୍ୟ-ମାୟୁର ପରିମାଣ ୭୦ । ୭୨ ବା ୮୦ ସ୍ଥିର କରି ଅଯୁ ସ୍ଫୁଟ କରିବାକୁ ହେବ ।

"ତ୍ରିଶଙ୍କମହାପ୍ରାଜ୍ଞ ସ୍ଫୁଟୀପାତାନୁପାତତଃ
ଲବ୍ଧାଦ୍ୱନନୁପାତେନ ମଧ୍ୟ ମଧ୍ୟେଽପି ଯୋଜୟେତ୍ ।
ଦୀର୍ଘାୟୁଷଂ ବଳାଗୀୟତ୍ର ସ୍ଫୁଟୀ ଚପଲାତ୍ମକମ୍ ।"

ଅଯୁଦାତାର ସ୍ଫୁଟାଂଶ ଯେତେ ଭୋଗ ହୋଇଯାଇଥିବ ଓ ବାକି ଯେତେ ଅଂଶ ଥିବ ତାହାର ଅନୁପାତ ଅନୁସାରେ ପଶ୍ଚାତ୍ ବର୍ତ୍ତୀ ଅଯୁଖଣ୍ଡର ପରିମାଣ ଯେତେ ବର୍ଷ ଅଯୁର୍ଭୋଗ ହେବାକୁ ଥିବ ତହିଁରୁ ଅଠପତ ଦୀର୍ଘାୟୁ ବା ମଧ୍ୟାୟୁର ପରିମାଣ ସଙ୍ଗେ ମିଶାଇଲେ ସ୍ଫୁଟ ପରମାୟୁର ବର୍ଷ ମାସାଦି ଜଣାଯିବ ।

"ମଧ୍ୟମାୟୁର୍ଲଭେ ତ୍ରୟ ଗ୍ରହାୟୁଃ ସିଦ୍ଧି ସମ୍ଭବମ୍
ପୂର୍ବବଦନୁପାତେନ ଯବ୍ୟୁକ୍ ମଧ୍ୟମାୟୁଷି ।"

ଯେଉଁଠାରେ ଅଳ୍ପାୟୁ ସ୍ଥିର ହେବ ସେଠାରେ ପରବର୍ତ୍ତୀ ଖଣ୍ଡର ଅନୁପାତ ହେବ ନାହିଁ । କେବଳ ଯେଉଁ ଅଳ୍ପାୟୁ ବର୍ଷର ଖଣ୍ଡପ୍ରାପ୍ତ ହେବ ସେଥିରୁ ଅନୁପାତ ସ୍ଥିର କରିବାକୁ ହେବ ।

"କଦାଚିତ୍ ସର୍ବ ଯୋଗେନ ଗ୍ରହାୟୁଷ୍ୟ ସମାଗତେ ।
ଯବଭ୍ରବାନୁପାତସ୍ୟ ତର୍ନୈକ ଖଣ୍ଡଃସିଦ୍ଧ୍ୟତି ।"

ସବୁ ପ୍ରକାରେ ଯେଉଁ ଅଳ୍ପାୟୁ ନିର୍ଣ୍ଣୟ ହେବ, ସେଠାରେ ବ ୩୨ ଷ ଖଣ୍ଡର ଅନୁପାତ କରିବାକୁ ହେବ ।

"ପୂର୍ଣ୍ଣମାଦ୍ଦୌ ଦ୍ୱାଶ୍ଚରନ୍ତେଽନୁପାତେ ମଧ୍ୟତୋ ଭବେତ୍
ରାଶିଦ୍ୱୟସ୍ୟ ଯୋଗାର୍ଦ୍ଧଂ ବର୍ଷାଣାଂ ସ୍ଫୁଟ ମୁଚ୍ୟତେ ।"

ଲଗ୍ନେଶ ଓ ଅଷ୍ଟମେଶ, ଲଗ୍ନ ଚନ୍ଦ୍ର ବା ଶନିଚନ୍ଦ୍ର ଏବଂ ଲଗ୍ନ ଓ ହୋରାଲଗ୍ନ ଏହି ତିନିଗୋଟି ମଧ୍ୟରୁ ଯେଉଁ ଦୁଇଗୋଟି ଦ୍ୱାରା ଆୟୁସ୍ଥିର ହେବ ସେହିଦୁହିଙ୍କର ସ୍ଫୁଟ ଅଂଶାଦି (ରାଶିସଂଖ୍ୟା ଛାଡି) ଯୋଗ କରିବାକୁ ହେବ ।

"ପୃଥକ୍ ସ୍ଫୁଟଂ ଚ ସଂସ୍ଥାପ୍ୟ ବିଲଗ୍ନେଶାଷ୍ଟମେଶୟୋଃ
ଷଡ୍‌ରାଶିନ୍ ତ୍ୟଜେତ୍ ଚତ୍ର ବିଦ୍ୟମାନେନ ସଂଗୁଣେତ୍ ।"

ରାଶି ସଂଖ୍ୟାଛାଡ଼ି ଲଗ୍ନେଶ ଓ ଅଷ୍ଟମେଶର ସ୍ଫୁଟାଂଶକୁ ପୃଥକ୍ ପୃଥକ୍ ରଖିବେ ।

"ତ୍ରୈରାଶିକେନ ଖଣ୍ଡସ୍ୟ ଯଦାପ୍ତଂ ବର୍ଷମାଦିଶେତ୍
ଲଗ୍ନେଶସ୍ୟାଷ୍ଟମେଶସ୍ୟ ଗ୍ରହୂରାଗତୟୋର୍ଦ୍ୱିଜ ।"

ତ୍ରୈରାଶିକ ଅନୁସାରେ ଭୁକ୍ତାଂଶ ଓ ଭୋଗ୍ୟାଂଶ ସ୍ଥିରକରି ପ୍ରତ୍ୟେକ ଖଣ୍ଡର ପରିମାଣ ଅନୁସାରେ ଆୟୁସ୍ଥିର ହେବ ।

"ବର୍ଷାଦି ପିଣ୍ଡୟୋ ର୍ଯୋଗଂ ତଦର୍ଦ୍ଧଂ ସ୍ଫୁଟକାୟୁଷେ
ଦୀର୍ଘମାୟୁର୍ଲଭେତ୍ ଚତ୍ର ଦ୍ୱିସପ୍ତାଦେଷୁ ଯୋଜୟେତ୍ ।"

ତ୍ରୈରାଶିକ ହିସାବରେ ଯେତେବର୍ଷ ଆୟୁସ୍ଥିର ହେବ ତାହାର ଅଧେ ଦୀର୍ଘାୟୁସ୍ଥଳେ ମଧ୍ୟାୟୁର ପରିମାଣ ସହିତ ଓ ମଧ୍ୟାୟୁସ୍ଥଳେ ଅଳ୍ପାୟୁର ପରିମାଣ ସହିତ ମିଶାଇଲେ ଯୋଗଫଳ ସ୍ଫୁଟ ପରମାୟୁ ହେବ ।

"ଯଦ୍ବା ଗୃହୀତମେ ଯୋଗ୍ୟଂ ଦୀର୍ଘସଜ୍ଞା ସ୍ପୁଟର୍ଭବେତ୍
ଦୀର୍ଘମଧ୍ୟାୟୁଷି ବସ୍ତ୍ର ଅନୁପାତାପ୍ତି ଯୋଜୟେତ୍ ।"

ଯେତେବେଳେ ମଧ୍ୟମାୟୁର ପରିମାଣ ୮୦ ବର୍ଷ ହେବ ସେଠାରେ ଅନୁପାତ ପ୍ରାପ୍ତଆୟୁ ତାହା ସଙ୍ଗେ ଯୋଗ କଲେ ଦୀର୍ଘାୟୁ ହେବ ।

"ଅଲ୍ପାୟୁଷି ଯଦାଲବ୍ଧମଭ୍ବମନୁପାତକମ୍
ପ୍ରବର୍ତ୍ତିମାନ ମାୟୁଃସ୍ୟା କ୍ଷଲ୍ପପ୍ରଭୃତ ମେବ ଚ ।"

ଯେତେବେଳେ ଅଲ୍ପାୟୁ ସ୍ଥିର ହେବ, ପରଖଣ୍ଡ ଅପ୍ରାପ୍ତି ହେତୁ ତ୍ରୈରାଶ୍ୟାଂଶ ଲବ୍ଧ ସ୍ପୁଟ-ବର୍ଷ ଅଧେ ଯାହା ହେବ ସେହି ହେବ ଆୟୁର ପରିମାଣ ।

"ବିଲଗ୍ନହୋରୟୋରେବଂ ତଦେବ ଲଗ୍ନଚନ୍ଦ୍ରୟୋଃ
ସର୍ବଯୋଗେଷୁ ବୈବସ୍ତ୍ର ସଂସ୍କାର ମନୁପାତତଃ ।"

ଲଗ୍ନ ଓ ହୋରାଲଗ୍ନ ଏବଂ ଲଗ୍ନ ଓ ଚନ୍ଦ୍ରଠାରୁ ଆୟୁ ପ୍ରାପ୍ତ ହେଲେ ପୂର୍ବୋକ୍ତ ନିୟମରେ ଅନୁପାତ ସ୍ଥିର କରିବେ । ପୂର୍ବୋକ୍ତ ତିନି ପ୍ରକାର ଆୟୁଦାତାର ଏକମତ ହେଲେ ଲଗ୍ନ ଓ ଅଷ୍ଟମ ପତିଙ୍କୁ ମୁଖ୍ୟ ଆୟୁଦାତା ବୋଲି ସେମାନଙ୍କର ନିର୍ଦ୍ଦିଷ୍ଟ ବ ୪୦ ର୍ଷ ଖଣ୍ଡ ଗ୍ରହଣ କରାଯିବ ।

ତିନିପ୍ରକାର ଆୟୁଦାତା ମଧ୍ୟରେ ଉଭୟ ଏକ ମତ ହେଲେ ରାଶିଦ୍ବୟର ନିର୍ଦ୍ଦିଷ୍ଟ ଖଣ୍ଡଗ୍ରାହ୍ୟ । ତିନି ପ୍ରକାର ତିନି ମତ ହେଲେ

ଲଗ୍ନ ଓ ହୋରାଲଗ୍ନ-ନିର୍ଦ୍ଦିଷ୍ଟ ବ ୩୨ ବର୍ଷ ବା ଲଗ୍ନ ଓ ଚନ୍ଦ୍ର ୩୬ ବର୍ଷ ଗ୍ରହଣ କରିବେ ।

## ଆୟୁଶୋଧନ:—

**ସୂତ୍ର:-ଶନୌଯୋଗହେତୌ କକ୍ଷାହ୍ରାସଃ । ୧୦ ।**

**ବିପରୀତ ମିତ୍ୟନ୍ୟେ । ୧୧ ।**

**ନ ସ୍ୱର୍କ୍ଷ ତୁଙ୍ଗଗେ ସୌରେ । ୧୨ ।**

**କେବଲ ପାପଦୃଗ୍‌ଯୋଗି ନ ଚ । ୧୩ ।**

ଅର୍ଥ:—ଶନି ଆୟୁର୍ଦ୍ଦାତା ହେଲେ ( ଲଗ୍ନେଶ କିମ୍ବା ଅଷ୍ଟମେଶ ହେଲେ ) ଏକ କକ୍ଷା ହ୍ରାସହୁଏ । କୌଣସି କୌଣସି ଆଚାର୍ଯ୍ୟମାନେ କହିଛନ୍ତି ଯେ, ଶନି ଆୟୁର୍ଦ୍ଦାତା ହେଲେ ମଧ୍ୟ କକ୍ଷା ହ୍ରାସ ହେବ ନାହିଁ । କିନ୍ତୁ ଜୈମିନିଙ୍କ ମତରେ ଶନି ଯଦି ନିଜ କ୍ଷେତ୍ର ଅର୍ଥାତ୍:---ମକର କୁମ୍ଭରେ ଥାଏ ବା ତୁଙ୍ଗୀ ହୋଇଥାଏ, ଅର୍ଥାତ୍:---ତୁଳାରାଶିରେ ଥାଏ ତେବେ କକ୍ଷାହ୍ରାସ ହୁଏ ନାହିଁ । ଉକ୍ତ ଶନି ଶୁଭଗ୍ରହ ଯୋଗ ବା ଦୃଷ୍ଟି ବର୍ଜିତ ହୋଇ କେବଳ ପାପଗ୍ରହଯୁକ୍ତ ବା ଦୃଷ୍ଟ ହେଲେ ସୁଦ୍ଧା କକ୍ଷାକହ୍ରାସ ହୁଏ ନାହିଁ ।

## କକ୍ଷାବୃଦ୍ଧି ଯୋଗ:---

### ସୂତ୍ର:-ପିତୃଲାଭଗେ ଗୁରୌ କେବଲ ଶୁଭ ଦୃଗ୍ ଯୋଗିନ୍ନା ଚ କକ୍ଷା ବୃଦ୍ଧିଃ । ୧୪ ।

ଅର୍ଥ:---ବୃହସ୍ପତି ଯୋଗ କର୍ତ୍ତା ( ଲଗ୍ନେଶ ବା ଅଷ୍ଟମେଶ ) ହେଲେ ଏବଂ ଲଗ୍ନ ବା ସପ୍ତମରେ ଥିଲେ ନଚେତ୍ ଶୁଭଯୁକ୍ତ ଓ ଶୁଭଦୃଷ୍ଟ ହୋଇଥିଲେ କକ୍ଷା ବୃଦ୍ଧି ହୁଏ ।

ଦ୍ରଷ୍ଟବ୍ୟ--ଗ୍ରହପଥକୁ କକ୍ଷା କୁହାଯାଏ । ଉକ୍ତ କକ୍ଷାରେ ଦ୍ୱାଦଶରାଶି ଅବସ୍ଥିତ । ତେଣୁ କେହି କେହି କହନ୍ତି ଯେ, କକ୍ଷା-ହ୍ରାସ ବା ବୃଦ୍ଧି ହେଲେ ୧୨ବର୍ଷହିଁ ହ୍ରାସ ବା ବୃଦ୍ଧି କରିବାକୁ ପଡିବ । କିନ୍ତୁ ପ୍ରକୃତରେ ଉକ୍ତ ଗ୍ରନ୍ଥରେ ୩୨, ୩୬ ଓ ୪୦ ବର୍ଷ ଭେଦରେ କକ୍ଷା ତିନି ପ୍ରକାର । ଯଦି ଆୟୁ ୩୨ ହେଉଥାଏ, ବୃହସ୍ପତି ଯୋଗରେ ୩୬ ଗ୍ରହଣ କରାଯିବ । ଯଦି ୩୬ ହେଉଥାଏ, ତେବେ ୪୦ ଗ୍ରହଣ କରାଯିବ, ଆୟୁ ୪୦ ହେଉଥିଲେ ବୃହସ୍ପତି ଯେଉଁ ରାଶିରେ ଥିବେ ସେହି ଚର ଦଶାର ଅର୍ଦ୍ଧ ଭାଗ ଉକ୍ତ ୪୦ ରେ ମିଶାଇଲେ ଯାହା ହେବ ତାହା ଅଲ୍ପାୟୁର ପରିମାଣ ବୋଲି ସ୍ଥିର କରାଯିବ । ଏହାପରେ ମଧ୍ୟମାୟୁରେ ଏହାର ଦ୍ୱିଗୁଣ ଏବଂ ଦୀର୍ଘାୟୁରେ ଏହାର ତ୍ରିଗୁଣ କରି ଆୟୁସ୍ପଷ୍ଟ କରିବାକୁ ହେବ । ସେହିପରି କକ୍ଷାହ୍ରାସରେ ୪୦ ଠାରେ ୩୬,

୩୬ ଠାରେ ୩୨ ଏବଂ ୩୨ ରେ କକ୍ଷା ହ୍ରାସ ହେଉ-ଥିଲେ ଶନି ଯେଉଁ ରାଶିରେ ଥିବେ ସେହି ରାଶିର ଅର୍ଦ୍ଧ ଭାଗକୁ ୩୨ରୁ ଫେଡ଼ ଅବଶିଷ୍ଟ ଫଳକୁହିଁ ଅଳ୍ପାୟୁ ରୂପେ ଧରି ପୂର୍ବପରି ଅନୁପାତ ଦ୍ୱାରା ଆୟୁ ସ୍ଥିର କରିବେ ।

ପରାଶର ମତରେ:—

"ଅଧୁନା ସଂପ୍ରବକ୍ଷାମି ହ୍ୟାୟୁଃ ଶୋଧନ ହେତବେ

କକ୍ଷା ହ୍ରାସଂ ତଥା ବୃଦ୍ଧିଂ ଶନି ଯୋଗେନ ବୈଦ୍ୱିଜ ।"

ଅର୍ଥାତ୍:---ଆୟୁ ଶୋଧନରେ ଶନିହେତୁ କପରି କକ୍ଷାର ହ୍ରାସ ଓ ବୃଦ୍ଧି ହୁଏ ତାହା କୁହାଯାଉଛି ।

"ଲଗ୍ନାଧୀଶଃ ଶନୟୁତୋ ଲଗ୍ନାର୍ଥୀଶୋଽଥବା ଦ୍ୱିଜ

ଯଦ୍ୱା ଯୋଗଦୟେ ବପ୍ର ଶନିର୍ଯୋଗଂ କତ୍ରେତ ଚ ।

କକ୍ଷାହ୍ରାସଂ ଭବେଦ ଇତ୍ୟୁକ୍ତଂ ଋଦ୍ରାଯାମଳେ ।"

ପୂର୍ବୋକ୍ତ ତିନି ପ୍ରକାର ଆୟୁରେ ଶନି ଆୟୁ ଦାତା ହେଲେ ବା ଲଗ୍ନାଧିପତି ଓ ଅଷ୍ଟମାଧିପତି ସଙ୍ଗେ ଶନିଯୁକ୍ତ ହେଲେ କକ୍ଷା-ହ୍ରାସ ହୁଏ ।

"ଆୟୁର୍ଦାୟୁ ସମାପନ୍ନେ କକ୍ଷାହୀନି ଦ୍ୱିଜୋତ୍ତମ,

ଏକୈକ ଖଣ୍ଡେ କଶୈକା ତସ୍ୟାହାନିଃ ପ୍ରକାୟୁତେ,

ଦ୍ୱାବିଂଶାଦ୍ଦେନ ଖଣ୍ଡେନଷଟ୍ତ୍ରିଂଶାଦ୍ଦେନ ବା ତଥା,

ଚତ୍ୱାରିଂଶାବ୍ଦ ବିଜ୍ଞେୟା କକ୍ଷୈକାହ୍ରାସ୍ତୋ ତ୍ତମ,
ଦୀର୍ଘାଦ୍ଭବତି ମଧ୍ୟାୟୁ ର୍ମଧ୍ୟାଦଲ୍ପାୟୁ ଜାୟତେ ।"

୩୨ ବର୍ଷ ୩୬ ବର୍ଷ ଓ ୪୦ ବର୍ଷ ଏହି ତିନୋ ଖଣ୍ଡକୁ ଗୋଟିଏ ଗୋଟିଏ କକ୍ଷା କୁହାଯାଏ ତିନି ପ୍ରକାର ଅୟୁ ମଧ୍ୟରୁ ଯେଉଁ ଆୟୁର ଯେଉଁ ଖଣ୍ଡ ଅଧିକାରୀ ହେବ, ସେହି ଅନୁସାରେ କକ୍ଷାହ୍ରାସ ହେଲେ ଦୀର୍ଘାୟୁ ମଧ୍ୟାୟୁ ହେବ । ମଧ୍ୟାୟୁ, ଅଲ୍ପାୟୁ: ଏବଂ ଅଲ୍ପାୟୁ ଅତି ଅଲ୍ପାୟୁ ହେବ ।

"ଅଲ୍ପାଦତ୍ୟଅଲ୍ପକାୟୁଃସ୍ୟାଦ୍ ବାଲ୍ୟେ ନିଧନ ସମ୍ଭବଃ
ଏବଂ ନୀଚ୍ଚବଗଃ ସୌରିଃ ପାପଦୃଷ୍ଟି ସମନ୍ୱିତଃ ।"

ଅଲ୍ପାୟୁ ଅତିଅଲ୍ପାୟୁ ହେଲେ ବାଲ୍ୟବସ୍ଥାରେ ମୃତ୍ୟୁହୁଏ । ଶନି ନୀଚ ବା ଶତ୍ରୁଗୃହୀ ହୋଇ ପାପଦୃଷ୍ଟ ବା ପାପଯୁକ୍ତ ହେଲେ ଏହିପରି କକ୍ଷା ହ୍ରାସ କରାଏ ।

"କକ୍ଷାହ୍ରାସ କୃତେବାପ୍ନି ବିଭଗେନାୟୁ ହାନିକୃତ
ଲଗ୍ନେଶୋ ବାପି ହୋରେଶଃ କେବଳେ ଶନିସଂଯୁତେ ।"

ଶନି ଲଗ୍ନାଧିପତି ବା ଅଷ୍ଟମାଧିପତି ସହଯୁକ୍ତ ହେଲେ କକ୍ଷା-ହ୍ରାସ ହୁଏ । କକ୍ଷାହ୍ରାସ ହେଲେ ଅୟୁ ତିନି- ଭାଗରୁ ଏକଭାଗ କମିଯାଏ ।

"ପାପର୍କ୍ଷେ ପାପଯୁକ୍ତେ ବା ପାପଦୃଷ୍ଟି ସମନ୍ୱିତେ,
କକ୍ଷାହ୍ରାସଂ ନ କୁର୍ବୀତ ବନାନୀଗୁରୁରେଗେଦ୍ଧିକ ।"

ଶନି ପାପକ୍ଷେତ୍ରସ୍ଥ ବା ପାପଯୁକ୍ତ କିମ୍ବା ପାପଗ୍ରହ ଦୃଷ୍ଟ ହେଲେ ସୁଦ୍ଧା କକ୍ଷାହ୍ରାସ କରେ ନାହିଁ । ଶନି ଯଦି ନୀଚସ୍ଥ ହୋଇ ପାପ-ଯୁକ୍ତ ବା ପାପଦୃଷ୍ଟ ହେବ, ତେବେ କକ୍ଷାହ୍ରାସ ହେବ ।

"ଶୁଭକ୍ଷେତ୍ରେ ଶୁଭସଂଯୁକ୍ତେ ଶୁଭ ଦୃଷ୍ଟେ ଚ ତୁଙ୍ଗଗେ

ପାପଯୋଗେନ ରହିତେ କକ୍ଷାବୃଦ୍ଧି କରଃଶନିଃ ।"

ଶନି ଶୁଭ କ୍ଷେତ୍ରରେ ଥାଇ ଶୁଭଦୃଷ୍ଟ ବା ଯୁକ୍ତ ହେଲେ କିମ୍ବା ତୁଙ୍ଗରେ ଥାଇ ପାପଗ୍ରହର ଯୋଗ ବା ଦୃଷ୍ଟି ନ ହେଉଥିଲେ କକ୍ଷା ବୃଦ୍ଧି କରଏ ।

ମାରକ ଯୋଗଃ---

**ସୂତ୍ରଃ-ମାଲିନେ ଦ୍ୱାରବାହ୍ୟେ ନବାଂଶେ ନିଧନଂ-**
**ଦ୍ୱାରଦ୍ୱାରେ ଶଯ୍ୟୋଶ୍ଚମାଲିନ୍ୟେ । ୧୪ ।**

ଅର୍ଥଃ---ପାପ ଗ୍ରହଯୁକ୍ତ ବା ଦୃଷ୍ଟ ରାଶିକୁ 'ମାଳିନ୍ୟ' କୁହାଯାଏ । ଦଶାଶ୍ରିତ ରାଶିକୁ (ଅର୍ଥାତ୍-ଯେଉଁ ଦଶା ଯେଉଁ ରାଶିରୁ ଆରମ୍ଭ ହୋଇଥିବ ତାହାକୁ ) 'ଦ୍ୱାର' କୁହାଯାଏ । ପ୍ରଥମ ଦଶାପ୍ରଦ ରାଶିଠାରୁ ଦ୍ୱାରରାଶି ଯେତେ ଦୂରହେବ, ଦ୍ୱାର ରାଶିଠାରୁଁ ସେତକ ସଂଖ୍ୟା ଗଣିଲେ ଯେଉଁ ରାଶି-ହେବ ତାହାକୁହିଁ 'ବାହ୍ୟ' କୁହାଯାଏ । ଦ୍ୱାର ଓ ବାହ୍ୟ-ରାଶି ମାଳିନ୍ୟ ହେଲେ ( ପାପଦୃଷ୍ଟ ବା ପାପଯୁକ୍ତ ହେଲେ) ବା ଦ୍ୱାର ଓ ଦ୍ୱାରେଶ ମଳିନ ହେଲେ, ଏହିଦ୍ୱାର ରାଶିର ନବାଂଶ ଦଶାରେ ମରଣ ହୁଏ ।

ସୂତ୍ର:–ଶୁଭଦୃଗ୍ ଯୋଗାନ୍ନ । ୧୬ ।

ଅର୍ଥ:- -ଦ୍ୱାର, ବାହ୍ୟ ରାଶି ଉପରେ ବା ଦ୍ୱାରେଶ ଉପରେ ଶୁଭ-ଗ୍ରହ ଯୁକ୍ତ ଓ ଦୃଷ୍ଟ ହୋଇଥିଲେ ସେହି ଦଶାରେ ଜାତକର ମୃତ୍ୟୁ ହୁଏ ନାହିଁ ।

ସୂତ୍ର:–ରୋଗେଶେ ତୁଙ୍ଗେ ନବାଂଶ ବୃଦ୍ଧିଃ । ୧୭ ।

ଅର୍ଥ:---ଜନ୍ମ ଲଗ୍ନର ଅଷ୍ଟମାଧିପତି ଉଚ୍ଚରେ ଥିଲେ ( ପୂର୍ବ କଥିତ) ନବାଂଶ ଦଶାରେ ମୃତ୍ୟୁ ନ ହୋଇ ନ'- ବର୍ଷ ବୃଦ୍ଧି ହୁଏ । ଅର୍ଥାତ୍:---ତାର ଅଗ୍ରିମ ରାଶିଦଶାରେ ମୃତ୍ୟୁ ହୁଏ ।

ସୂତ୍ର:–ତତ୍ରାପି ପଦେଶଦଶାନ୍ତେ ପଦନବାଂଶ-
ଦଶାୟାଂ ପିତୃଦନେଶ ତ୍ରିକୋଣେବା । ୧୮ ।

ଅର୍ଥ:---ମାଳାନ୍ୟ ରାଶିଦଶାରେ ବା ତାର ଅଗ୍ରିମ ରାଶି-ଦଶାରେ ପୁଣି ଷଡ଼େଶ ଗ୍ରହ ଯେଉଁ ରାଶିରେ ଥିବ ସେହିରାଶି ଦଶାରେ ବା ପଦରାଶି ଦଶାରେ ଏବଂ ଜନ୍ମ-ଲଗ୍ନ ଅଷ୍ଟମେଶର ତ୍ରିକୋଣ ରାଶି ଦଶାରେ ବା ଉକ୍ତ ରାଶିମାନଙ୍କ ଅନ୍ତର୍ଦଶାରେ ମୃତ୍ୟୁ ବିଚାର କରିବେ ।

ପ୍ରକାରାନ୍ତରେ ଦୀର୍ଘାଦି ଯୋଗ:—

---

ସୂତ୍ର:–ପିତୃଲାଭ ରୋଗେଶପ୍ରାଣିନ କଣ୍ଟକାଦସ୍ଥେ-
ସ୍ୱତଶ୍ଚୈବଂ ତ୍ରିଧା । ୧୯ ।

ଅର୍ଥ:—ଲଗ୍ନ ଓ ସପ୍ତମର ଅଷ୍ଟମାଧିପତି ମଧ୍ୟରେ ଯେ ବଳବାନ୍ ସେ ଯଦି କେନ୍ଦ୍ର, ପଣଫର ଓ ଆପୋକ୍ଲିମରେ ଥାଏ

ତେବେ କ୍ରମରେ ଦୀର୍ଘାୟୁ, ମଧ୍ୟାୟୁ ଓ ଅଳ୍ପାୟୁ ବୋଲି ବୁଝିବାକୁ ହେବ । ସେହିପରି ଆତ୍ମାକାରକ ଓ ଏହାର ସପ୍ତମର ଅଷ୍ଟମେଶ ଭିତରେ ଯେଉଁ ଗ୍ରହ ବଳବାନ୍ ସେ ଯଦି କାରକ ଲଗ୍ନର କେନ୍ଦ୍ର, ପଣଫର ଓ ଆପୋକ୍ଲିମରେ ଥାଏ, ତେବେ କ୍ରମରେ ଦୀର୍ଘ, ମଧ୍ୟ ଓ ଅଳ୍ପାୟୁ ବୋଲି ସ୍ଥିର କରାଯିବ । ଏଠାରେ ଲଗ୍ନର ଅଷ୍ଟମେଶ ଓ ସପ୍ତମର ଅଷ୍ଟମେଶ କହିବା ତାତ୍ପର୍ଯ୍ୟ ହେଉଛି ଏହି ଯେ, ଲଗ୍ନ ବିଷମ ହେଲେ କ୍ରମ ଓ ସମହେଲେ ଉତ୍କ୍ରମରେ ଅଷ୍ଟମେଶର ଗଣନା କରାଯିବ । କିନ୍ତୁ—

## ସୂତ୍ର:-ଯୋଗାତ୍ ସମେ ସ୍ୱସ୍ମିନ୍ ବିପରୀତମ୍ ।୨୦। ରାଶିତଃ ପ୍ରାଣଃ ।୨୧।

ଅର୍ଥ:—ବିଷମ ଲଗ୍ନର ତୃତୀୟରେ ଏବଂ ସମଲଗ୍ନର ଏକାଦଶରେ କାରକଲଗ୍ନ ହେଲେ, କାରକଦ୍ୱାରା ଆୟୁର୍ଦାୟ ଆନୟନ ସମୟରେ, ବଳବାନ୍ ଅଷ୍ଟମେଶ କାରକର କେନ୍ଦ୍ରସ୍ଥ ହେଲେ ଅଳ୍ପାୟୁ, ପଣଫରରେ ଥିଲେ ମଧ୍ୟାୟୁ ଓ ଆପୋକ୍ଲିମରେ ଥିଲେ ଦୀର୍ଘାୟୁ ହେବ ।

## ସୂତ୍ର:-ରେଗେଶଂୟୋଃ ସ୍ୱତଃ ଐକ୍ୟେ ଯୋଗେ-ବା ମଧ୍ୟମ୍ । ୨୨ ।

ଅର୍ଥ:—ଲଗ୍ନ ଓ କାରକଲଗ୍ନର ବଳବାନ୍ ଅଷ୍ଟମେଶ କାରକସହ ଥିଲେ ବା ସେ ନିଜେ ଆତ୍ମ କାରକ ହୋଇ, ଅଳ୍ପାୟୁ ବା ଦୀର୍ଘାୟୁ ହୋଇଥିଲେ ସୁଦ୍ଧା ମଧ୍ୟମାୟୁ ହେବ ।

ଦୀର୍ଘାଦ୍ଧ ଯୋଗମାନଙ୍କରେ କକ୍ଷାହ୍ରାସ ଯୋଗ:—

**ସୂତ୍ର:-ପିତୃଲାଭୟୋଃ ପାପା ମଧ୍ୟତ୍ୱେ କୋଣେ ପାପାଯୋଗେ ବା କକ୍ଷା ହ୍ରାସଃ । ୨୩ ।**

ଅର୍ଥ:—ଲଗ୍ନ ଓ ସପ୍ତମ ପାପଗ୍ରହଂ ମଧ୍ୟରେ ଥିଲେ ବା ଲଗ୍ନ ଓ ସପ୍ତମର ତ୍ରିକୋଣରେ ପାପଗ୍ରହ ଯୁକ୍ତ ହେଲେ ଉକ୍ତ ପ୍ରକରଣର ଏହି ଅଦ୍ଧର୍ଦାୟୁରେ କକ୍ଷା ହ୍ରାସ ହୁଏ ।

**ସୂତ୍ର:-ସ୍ୱାଶ୍ମିନ୍ନପ୍ୟେବମ୍ । ୨୪ ।**

ଅର୍ଥ:---କାରକ ଲଗ୍ନ ଓ ତାର ସପ୍ତମ ପାପଗ୍ରହ ମଧ୍ୟରେ ଥିଲେ ବା ସେ ଦୁହିଙ୍କର ତ୍ରିକୋଣରେ ପାପଗ୍ରହ ଥିଲେ 'କକ୍ଷା-ହ୍ରାସ' ହୁଏ ।

**ସୂତ୍ର:-ତସ୍ମିନ୍ ପାପେ ନୀଚେଽତୁଙ୍ଗେଽଶୁଭ-ସଂଯୁକ୍ତେ ଚ । ୨୫ ।**

ଅର୍ଥ:---ସେହି ଆତ୍ମକାରକ ପାପହୋଇ ନୀଚ ହୋଇଥିବ ଅଥବା ସେ ଅନୁଚ୍ଚରାଶିରେ (ଉଚ୍ଚ ନୀଚର ଅତିରିକ୍ତ ସ୍ଥାନରେ) ଥାଇ ପାପଯୁକ୍ତ ହୋଇ ଥିଲେ 'କକ୍ଷା ହ୍ରାସ' ଘଟେ ।

**ସୂତ୍ର:-ଅନ୍ୟଦନ୍ୟଥା । ୨୬ ।**

ଅର୍ଥ:---ଲଗ୍ନ, ସପ୍ତମ ବା କାରକ ଓ ତାର ସପ୍ତମ ଶୁଭଗ୍ରହ ମଧ୍ୟରେ ଥିଲେ ବା ସେମାନଙ୍କ ତ୍ରିକୋଣରେ ଶୁଭଗ୍ରହ ଥିଲେ

କକ୍ଷା ବୃଦ୍ଧି ହୁଏ । ଏଠାରେ 'କକ୍ଷାବୃଦ୍ଧି' ଶବ୍ଦଦ୍ୱାରା କେବଳ ଗୋଟିଏ ରାଶିର ବୃଦ୍ଧି ବୁଝିବାକୁ ହେବ ।

**ସୂତ୍ର:-ଗୁରୌ ଚ । ୨୭ ।**

ଅର୍ଥ:---ବୃହସ୍ପତି ଠାରୁ ମଧ୍ୟ ସେହିପରି କକ୍ଷା ହ୍ରାସ ଓ କକ୍ଷା ବୃଦ୍ଧି କଳ୍ପନା କରାଯିବ । ଅର୍ଥାତ୍:---ବୃହସ୍ପତି ପାପ ମଧ୍ୟସ୍ଥ ହେଲେ ବା ବୃହସ୍ପତିଙ୍କର ତ୍ରିକୋଣରେ ପାପଯୋଗ ହେଲେ କକ୍ଷା ହ୍ରାସ ହୁଏ । ଏବଂ ବୃହସ୍ପତି ଶୁଭ ମଧ୍ୟସ୍ଥ ଓ ବୃହସ୍ପତିର ତ୍ରିକୋଣରେ ଶୁଭଯୁକ୍ତ ହେଲେ କକ୍ଷାବୃଦ୍ଧି ହୁଏ । ଏଠାରେ ବିଶେଷତ୍ୱ ଏହି ଯେ:---

**ସୂତ୍ର:-ପୂର୍ଣ୍ଣେନ୍ଦୁଶୁକ୍ରୟୋରେକରାଶିବୃଦ୍ଧି । ୨୮ ।**

**ଶନୌ ବିପରୀତମ୍ । ୨୯ ।**

ଅର୍ଥ:---ପୂର୍ଣ୍ଣଚନ୍ଦ୍ର ଓ ଶୁକ୍ରର ସମ୍ବନ୍ଧ ରହିଲେ ଏକରାଶି ଅର୍ଥାତ୍ ୯ ବର୍ଷ ବୃଦ୍ଧି ହୁଏ । ସେହିପରି ଶନିର ସମ୍ବନ୍ଧ ରହିଲେ କକ୍ଷା ହ୍ରାସରେ ୯ ବର୍ଷ ନ୍ୟୂନ ହୁଏ ।

**ସୂତ୍ର:-ସ୍ଥିରଦଶାୟାଂ ଯଥା ଖଣ୍ଡଂ ନିଧନମ୍ । ୩୦ ।**

**ତତ୍ରାପି ବିଶେଷଃ । ୩୧ ।**

**ପାପମଧ୍ୟେ ପାପକୋଣେ ଋପୁରୋଗୟୋଃ-**

**ପାପେ ବା । ୩୨ ।**

ଅର୍ଥ:---ସ୍ଥିରଦଶା ବ୍ରହ୍ମଗ୍ରହାଦାଂଶ ଦ୍ୱାଦଶ ରାଶିକୁ ନେଇ ଗଠିତ ହୁଏ। ଅଳ୍ପାୟୁ ହେଲେ---ଏଥିରେ ପ୍ରଥମ ଗୃହରାଶିର ଦଶାରେ ; ମଧ୍ୟମାୟୁ ହେଲେ ; ଦ୍ୱିତୀୟ ଗୃହରାଶି ଦଶାରେ ଦୀର୍ଘାୟୁ-ହେଲେ ତୃତୀୟ ଗୃହରାଶିର ଦଶାରେ ମୃତ୍ୟୁହୁଏ। ଏଥିରେ ଯେଉଁ ରାଶି ପାପମଧ୍ୟ ଗତ ବା ଯାହାଠାରୁ ତ୍ରିକୋଣରେ ପାପଗ୍ରହଯୁକ୍ତ କିମ୍ବା ଯାହାଠାରୁ ଦ୍ୱାଦଶ, ଅଷ୍ଟମରେ ପାପଗ୍ରହଯୁକ୍ତ,ସେହି ରାଶିଦଶାରେ ମୃତ୍ୟୁହୁଏ ।

**ସୂତ୍ର:-ତଦୀଶୟୋଃ କେବଲ କ୍ଷୀଣେନ୍ଦୁଶୁକ୍ର-ଦୃଷ୍ଟୌ ବା,୩୩॥**

ଅର୍ଥ:---ଦ୍ୱାର, ବାହ୍ୟେଶ ଗ୍ରହ ପରସ୍ପର ଦୃଷ୍ଟି ଶୂନ୍ୟ ହୋଇ କେବଳ କ୍ଷୀଣ ଚନ୍ଦ୍ର ଓ ଶୁକ୍ର ଦୃଷ୍ଟ ହେଲେ ସେହି ଦ୍ୱାର-ରାଶିଦଶାରେ ମୃତ୍ୟୁ ହୁଏ । ଅଥବା ଦ୍ୱାଦଶ ଓ ଅଷ୍ଟମେଶ ପରସ୍ପର ଦୃଷ୍ଟି ଶୂନ୍ୟ ହୋଇ ଚନ୍ଦ୍ର, ଶୁକ୍ର ଦ୍ୱାରା ଦୃଷ୍ଟ ଲେହେ ସେହି ଦ୍ୱାଦଶ, ଅଷ୍ଟମେଶ ରାଶିଦଶାରେ ମୃତ୍ୟୁ-ହୁଏ ।

**ସୂତ୍ର:-ତତ୍ରାପ୍ୟାଦ୍ୟନ୍ତର୍ଯ୍ୟାରନାଥ ଦୃଶ୍ୟ-ନବଭାଗାଦ୍ ବା। ୩୪ ।**

ଅର୍ଥ:---ସେଠାରେ ଅର୍ଥାତ୍ ମାରକଲକ୍ଷଣାକ୍ରାନ୍ତ ରାଶି ଦଶାର ଅଷ୍ଟ-ମେଶ ଦୃଷ୍ଟ ତାର ଅନ୍ତର୍ଦଶାରେ ମଧ୍ୟ ମୃତ୍ୟୁ ହୋଇଥାଏ ।

ଅଥବା ଲଗ୍ନ ଲଗ୍ନର ଅଷ୍ଟମ ଓ ଅଷ୍ଟାଧିପତି ଦୃଷ୍ଟ ଯେ କୌଣସି ରାଶିଦଶା ଓ ଅନ୍ତରରେ ବା ତାହାର ନବାଂଶ ଦଶାରେ ମୃତ୍ୟୁ ହୁଏ ।

ରୁଦ୍ରଗ୍ରହ ବିଚାର:—

**ସୂତ୍ର:—ପିତୃଲାଭ ପ୍ରବେଶ ପ୍ରାଣୀରୁଦ୍ରଃ । ୩୫ ।**

**ଅପ୍ରାଣ୍ୟପି ପାପଦୃଷ୍ଟଃ । ୩୬ ।**

**ପ୍ରାଣିନି ଶୁଭଦୃଷ୍ଟେ ରୁଦ୍ରଶୂଳାନ୍ତମାୟୁଃ । ୩୭ ।**

ଅର୍ଥ:---ଲଗ୍ନ ଓ ସପ୍ତମରୁ କ୍ରମୋତ୍କ୍ରମ ଗଣନା ଦ୍ୱାରା ଅଷ୍ଟମେଶ ସ୍ଥିର କଲପରେ ଏହି ଉଭୟଗ୍ରହ ମଧ୍ୟରେ ଯେ ବଳବାନ୍ ତାହାକୁହିଁ ରୁଦ୍ରସଞ୍ଜ୍ଞକ ଗ୍ରହ କୁହାଯିବ । କିନ୍ତୁ ଏହି ଦୁର୍ବଳ ଗ୍ରହ ପାପଦୃଷ୍ଟ ହୋଇଥିଲେ ତାକୁ ମଧ୍ୟ ରୁଦ୍ର ସଞ୍ଜ୍ଞକ କୁହାଯିବ । ବଳବାନ୍ ରୁଦ୍ରଗ୍ରହ ଶୁଭ ଦୃଷ୍ଟ ହୋଇଥିଲେ ଏହାର ତ୍ରିକୋଣ ରାଶି ଦଶାରେ ଆୟୁ ସମାପ୍ତି ହୁଏ । (ରୁଦ୍ର ଶୂଳାନ୍ତ--ଅର୍ଥାତ୍ ଅଳ୍ପ, ମଧ୍ୟ, ଦୀର୍ଘାୟୁ ଭେଦରେ ପ୍ରଥମ ଶୂଳାନ୍ତ, ଦ୍ୱିତୀୟ ଶୂଳାନ୍ତ ଓ ତୃତୀୟ ଶୂଳାନ୍ତରେ ଆୟୁ ସମାପ୍ତି ହୁଏ । ଲଗ୍ନରୁ ପଞ୍ଚମ ପର୍ଯ୍ୟନ୍ତ ପ୍ରଥମ ଶୂଳ, ପଞ୍ଚମରୁ ନବମ ପର୍ଯ୍ୟନ୍ତ ଦ୍ୱିତୀୟ ଶୂଳ, ନବମରୁ ଲଗ୍ନପର୍ଯ୍ୟନ୍ତ ତୃତୀୟ ଶୂଳ ଧରାଯାଇଅଛି । ଏହାକୁହିଁ ତ୍ରିକୋଣ ରାଶିବୋଲି ଗ୍ରହଣ କରାଯାଏ । )

ସୂତ୍ର:-ତତ୍ରାପି ଶୁଭଯୋଗେ । ୩୮ ।

ଅର୍ଥ:—ବଳବାନ୍ ବା ଦୁର୍ବଳ କୌଣସି ଉଦ୍ରଗ୍ରହ ଶୁଭ ସଂଯୁକ୍ତ ହୋଇଥିଲେ ତାହାର ତ୍ରିକୋଣ ରାଶି ପର୍ଯ୍ୟନ୍ତ ଆୟୁ ନିଷ୍ଟସ୍ଥ କରିବେ ।

ସୂତ୍ର:-ବ୍ୟର୍କ ପାପଯୋଗେନ । ୩୯ ।

ଅର୍ଥ:---ରବି ଯୋଗରେ ମୃତ୍ୟୁ ହୁଏ ନାହିଁ । ( ଏହି ପ୍ରକରଣରେ ରବି ଶୁଭଗ୍ରହ ଅଟେ । )

ସୂତ୍ର:-ମନ୍ଦାରେନ୍ଦୁ ଦୃଷ୍ଟେ ଶୁଭଯୋଗାଭାବେ-
ପାପଯୋଗେଽପି ବା ଶୁଭ ଦୃଷ୍ଟୌ ବା
ପରତଃ । ୪୦ ।

ଅର୍ଥ:---ଉଭୟ ଉଦ୍ରଗ୍ରହ ଶନି, ମଙ୍ଗଳ ଓ ଚନ୍ଦ୍ର ଦ୍ୱାରା ଦୃଷ୍ଟ ହୋଇ ଶୁଭ ଯୋଗ ବା ପାପଯୋଗ ହୋଇ ନ ଥିଲେ ବା ଶନି, ମଙ୍ଗଳ, ଚନ୍ଦ୍ରଦ୍ୱାରା ଦୃଷ୍ଟ ହୋଇ ପାପଯୁକ୍ତ ହୋଇଥିଲେ ଅଥବା ଶନି, ମଙ୍ଗଳ, ଚନ୍ଦ୍ର ସହ ଶୁଭଗ୍ରହ ଦୃଷ୍ଟି ପଡ଼ୁଥିଲେ ଉଦ୍ରଗ୍ରହାଶ୍ରିତ ରାଶିର ଅଗ୍ରିମ ରାଶି-ଦଶାରେ ମୃତ୍ୟୁ ହୁଏ ।

ମୃତ୍ୟୁ ଶୂଳ ବିଚାର:---

ସୂତ୍ର:-ଶୂଳେ ତେତ୍ ତଦନ୍ତଶୂଳେ । ୪୧ ।

ଅର୍ଥ:---ଯଦି ଉଦ୍ର ଶୂଳରେ ଆୟୁ ସମାପ୍ତି ହେଉଥାଏ । ତେବେ

ଶୂଲ ରାଶି ଦଶାରେ ଅନ୍ୟ କୌଣସି ଶୂଳ ରାଶିର ଅନ୍ତର୍ଦଶାହିଁ ମୃତ୍ୟୁ କରାଏ ।

ସେହିପରି

"ପାପମାନସ୍ୟ ଶୂଳତ୍ରେ ପ୍ରଥମର୍ଷେ ମୃତଭିର୍ବେତ୍
ମିଶ୍ରେ ମଧ୍ୟମ ଶୂଳର୍ଷେ ଶୁଭମାନେ ନ୍ତ୍ୟଭେ ମୃତଃ ।

ଅର୍ଥାତ୍:---ଯଦି ଉଭୟ ରୁଦ୍ରଗ୍ରହ ପାପ ହୋଇଥାନ୍ତି, ତେବେ ପ୍ରଥମ ଶୂଳରେହିଁ ମୃତ୍ୟୁ ହୁଏ । ସେହିପରି ମିଶ୍ର ଅବସ୍ଥାରେ ଥିଲେ ଦ୍ୱିତୀୟ ଶୂଳରେ ଏବଂ ରୁଦ୍ରଗ୍ରହ ଦୁଇଟି ଶୁଭ ହୋଇଥିଲେ ଅନ୍ତ୍ୟଶୂଳରେ ମୃତ୍ୟୁ ହୁଏ ।

**ସୂତ୍ର:-ରୁଦ୍ରାଶ୍ରୟେପି ପ୍ରାୟେଣ । ୪୨ ।**
**ନିଧ୍ୟେ ପିତର ବଶେଷେଣ । ୪୩ ।**
**ଦ୍ୱନ୍ଦେରୁଦ୍ରେ ତଦନ୍ତଂ ପ୍ରାୟଃ । ୪୪ ।**

ଅର୍ଥ:-- ରୁଦ୍ରାଶ୍ରିତ ରାଶି ଦଶାରେ ପ୍ରାୟ ମୃତ୍ୟୁ ହୋଇଥାଏ । ( ଏଠାରେ 'ପ୍ରାୟ' ଶବ୍ଦ ଥିବାରୁ ରୁଦ୍ରାଶ୍ରିତ ରାଶି-ଦଶାପୂର୍ବରୁ ଓ ପରେ ମୃତ୍ୟୁର ସୂଚନା ମିଳୁଛି । ) କିନ୍ତୁ ମୀନ ଲଗ୍ନ ହୋଇଥିଲେ ପ୍ରଧାନତଃ ରୁଦ୍ରାଶ୍ରିତ ରାଶିରେ ମରଣ ହୁଏ । ଦ୍ୱିସ୍ୱଭାବ ରାଶିରେ ଉଭୟ ରୁଦ୍ରଗ୍ରହ ଥିଲେ ରୁଦ୍ରଗ୍ରହାଶ୍ରିତ ରାଶିଦଶାରେ ମୃତ୍ୟୁହୁଏ ଅଥବା ଲଗ୍ନର ଅଷ୍ଟମରେ

ଦୁଇଟି ରାଶି ଗ୍ରହ ଥିଲେ ସେହି ରାଶି ଗ୍ରହାଶ୍ରିତ ରାଶି-ଦଶାରେ ମୃତ୍ୟୁ ହୁଏ ।

**ସୂତ୍ର:—ପ୍ରଥମ ମଧ୍ୟମୋତ୍ତମେଷୁ ବା ତତ୍-**
**ଦାୟୁଷାମ୍ । ୪୫ ।**

ଅର୍ଥ:—ଅଳ୍ପାୟୁ, ମଧ୍ୟାୟୁ ଓ ଦୀର୍ଘାୟୁ ହୋଇଥିବା ମନୁଷ୍ୟ-ମାନଙ୍କର କ୍ରମରେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଶୂଳରାଶିର ଦଶାରେ ମୃତ୍ୟୁ ହୁଏ ।

ମହେଶ୍ୱର ଗ୍ରହ ବିଚାର:—

**ସୂତ୍ର:—ସ୍ୱଭବେଶୋ ମହେଶ୍ୱରଃ । ୪୬ ।**
**ସ୍ୱୋଚ୍ଚେ ସ୍ୱଗୃହେ ରିପୁଭହେଶ ପ୍ରାଣୀ ।୪୭।**

ଅର୍ଥ:—ଆତ୍ମାକାରକର ଅଷ୍ଟମେଶକୁ ମହେଶ୍ୱର କହନ୍ତି । କିନ୍ତୁ ଆତ୍ମାକାରକ ଯଦି ନିଜଘରେ ବା ଉଚ୍ଚରେ ଥାଏ, ତେବେ ଆତ୍ମାକାରକର ଅଷ୍ଟମେଶ ଓ ଦ୍ୱାଦଶେଶ ମଧ୍ୟରେ ଯେ, ବଳବାନ୍ ହେବ ତାହାକୁହିଁ ମହେଶ୍ୱର ଗ୍ରହ ବୋଲି ଧରାଯିବ ।

**ସୂତ୍ର:—ପାତାଭ୍ୟାଂ ଯୋଗେ ସ୍ୱସ୍ୟ ତୟୋର୍ବା-**
**ରେଚଗେତତଃ । ୪୮ ।**

ଅର୍ଥ:—ରାହୁ ବା କେତୁ ଆତ୍ମାକାରକ ସହ ଯୁକ୍ତ ହୋଇଥିଲେ ବା ଆତ୍ମାକାରକର ଅଷ୍ଟମରେ ଥିଲେ ତାର ଷଷ୍ଠେଶହିଁ ମହେ-ଶ୍ୱର ଗ୍ରହ ହେବ ।

## ବ୍ରହ୍ମଗ୍ରହ ବର୍ତ୍ତନ: —

ସୂତ୍ର:-ପ୍ରଭୁଭାବ ବୈରୀଶ ପ୍ରାଣି ପିତୃଲାଭ--
ପ୍ରାଣ୍ୟନୁଚରେ ବିଷମସ୍ଥୋ ବ୍ରହ୍ମା । ୪୯ ।

ଅର୍ଥ: — ଲଗ୍ନ ଓ ସପ୍ତମ ମଧ୍ୟରେ ଯେ, ବଳବାନ୍ ତାଠାରୁ ଷଷ୍ଠା-ଷ୍ଟମ ଦ୍ୱାଦଶାଧୀଶ ମଧ୍ୟରେ ଯେ ବଳଶାଳୀ ହୁଏ, ସେ ଯଦି ଲଗ୍ନ ସପ୍ତମ ମଧ୍ୟରେ ବଳବାନ୍ ରାଶିର ଅନୁଚର ହୋଇ ( ପୃଷ୍ଠସ୍ଥ ହୋଇ ) ବିଷମରାଶି ( ମେଷ ମିଥୁନାଦିରେ ) ରେ ଥାଏ ତେବେ ତାଙ୍କୁ ବ୍ରହ୍ମଗ୍ରହ କହନ୍ତି । ( ଲଗ୍ନ-ଭୋଗ୍ୟ ଠାରୁ ସପ୍ତମ ଭୁକ୍ତ ପର୍ଯ୍ୟନ୍ତ ସପ୍ତମର ଅନୁଚର ଏବଂ ସପ୍ତମର ଭୋଗ୍ୟ ଠାରୁ ଲଗ୍ନର ଭୁକ୍ତ ପର୍ଯ୍ୟନ୍ତ ଲଗ୍ନର ଅନୁଚର କୁହାଯାଏ । ) ଏହାପରେ ପରାଶର ଯଥା:---

ଲଗ୍ନାଦ୍‌ବା ସପ୍ତମାଦ୍ ବାପି ରନ୍ଧ୍ରରନ୍ଧ୍ର ବ୍ୟୟାଧିପା: ।
ଏତେଷୁ ବଳବାନ୍ ବିପ୍ର ମେଷାଦି ବିଷମସ୍ଥିତେ ।
ଲଗ୍ନ ସପ୍ତମୟୋର୍ମଧ୍ୟେ ରାଶେୟାଷ୍ଟବଳବାନ୍‌ଭବେତ୍ତୁ ।
ତଦ୍ଭୈରପୃଷ୍ଠ ଭାଗାଦ୍ୟ ସଂଯୋଗୋ ବିଦ୍ୟମାନତ: ।
ଏତଦ୍‌ଗୁଣସଂଯୁକ୍ତୈ ର୍ୟୁକ୍ତ: ସୋପି ବ୍ରହ୍ମାଗ୍ରହ:ସ୍ମୃତ: ।
ଲଗ୍ନସ୍ୟ ପୃଷ୍ଠଭାଗଂ ଚ ଷଟ୍‌କଂ ଚ ଦ୍ୟୂନବାଦକମ୍ ।
ସପ୍ତମସ୍ୟ ପୃଷ୍ଠଭାଗଂ ଷଟ୍‌କ ଲଗ୍ନାଦକଂ ଦ୍ୱିଜ ।
ବଳବାନ୍ ଷଷ୍ଠମ ସ୍ଥୋପି ବ୍ରହ୍ମାଖେଟ ସଉଚ୍ୟତେ ।

## ବ୍ରହ୍ମଗ୍ରହର ବୈଶିଷ୍ଟ୍ୟତା:---

### ସୂତ୍ର:-ବ୍ରହ୍ମଣି ଶନୌ ପାତୟୋର୍ବା ତତଃ । ୫୦।

ଅର୍ଥ: — ଶନି ଷଷ୍ଠର ବା ରାହୁ, କେତୁ ବ୍ରହ୍ମା ହେଉଥିଲେ, ସେଠାରେ ଷଷ୍ଠେଶଙ୍କୁହିଁ ବ୍ରହ୍ମଗ୍ରହ ବୋଲି ଧରାଯିବ । ସେହିପରି ପରାଶର:-"ବ୍ରହ୍ମଣା ଲକ୍ଷଣା କ୍ରାନ୍ତେ ବଲବାନ୍ ବାପି-ପାତୟୋଃ, ଶନିରାହୁଃ ବା କେତୁ ଯଦାଷଷ୍ଠୋ ଗ୍ରହୋଦ୍ୱିଜ" ।

### ସୂତ୍ର:-ବ୍ରହ୍ମା ସ୍ୱଭାବଶୋ ଭାବସ୍ଥଃ । ୫୧ ।

ଅର୍ଥ: — ଆତ୍ମାକାରକର ଅଷ୍ଟମେଶଙ୍କୁ ବ୍ରହ୍ମା କୁହାଯାଏ । ପୁଣି ଆତ୍ମା-କାରକର ଅଷ୍ଟମରେ ଥିବା ଗ୍ରହଙ୍କୁ ମଧ୍ୟ ବ୍ରହ୍ମା କୁହାଯାଏ ।

### ସୂତ୍ର:-ବହୂନାଂ ଯୋଗେ ସ୍ୱଜାତୀୟଃ । ୫୨ ।

ଅର୍ଥ: — ବହୁ ସଂଖ୍ୟକ ବ୍ରହ୍ମଗ୍ରହ ଏକତ୍ରିତ ହେଲେ ସେମାନଙ୍କ ଭିତରୁ ଅଧିକାଂଶ ବଳିଷ୍ଠ ଗ୍ରହହିଁ ବ୍ରହ୍ମା ହୁଏ ।

ପରାଶର ମଧ୍ୟ---

"ବହୂନାମଧିକୋଭାଗଃସୋଽପିବ୍ରହ୍ମାଗ୍ରହହୋଚ୍ୟତେ"

### ସୂତ୍ର:-ରାହୁଯୋଗେ ବିପରୀତମ୍ । ୫୩ ।

ଅର୍ଥ:---ଅଧିକାଂଶ ବଳର ଦୃଷ୍ଟିରୁ ରାହୁ, କେତୁ, ଯଦି ବ୍ରହ୍ମତ୍ୱ ପ୍ରାପ୍ତ ହେଉଥାନ୍ତି ତେବେ ତାହାଙ୍କର ବିପରୀତ ଗତି ଯୋଗୁଁ ଅଳ୍ପାଂଶରେ ଥିଲେ ମଧ୍ୟ ସେହି ରାଶିରେ ସମସ୍ତଙ୍କଠାରୁ ଅଧିକାଂଶ ରୂପେ ଗ୍ରହଣ କରିବାକୁ ହେବ ।

ତେଥିପାଇଁ ପରାଶର:---

"ସ୍ୱଦ୍ଦୋର୍ବ୍ରହ୍ମଯୋଗେନ ଅଧିକାସ୍ଥପଦା ଭବେତ୍,
ବିପରୀତଂ ବକ୍ରାମୀସ୍ୱାତ୍ ସର୍ବେଷ୍ଟ୍ୱନ୍ୟୂନଭାଗକମ୍ ।"

ସୂତ୍ର:-ବିବାଦେ ବଲୀ । ୫୪ ।

ଅର୍ଥ:—ଦୁଇଟି ବ୍ରହ୍ମଗ୍ରହ ବିବାଦରେ ବଳବାନ୍ ଗ୍ରହହିଁ ବ୍ରହ୍ମା ହୁଏ ।

ବ୍ରହ୍ମା ଓ ମହେଶ୍ୱର ଗ୍ରହର ଫଳ ବର୍ଣ୍ଣନ:—

ସୂତ୍ର:-ବ୍ରହ୍ମଣୋ ଯାବନ୍ମାହେଶ୍ୱରର୍କ୍ଷ ଦଶାନ୍ତ-
ମାୟୁଃ । ୫୫ । ତଂତ୍ରାପି ମହେଶ୍ୱର-
ଭବେଶ ତ୍ରିକୋଣଭେ । ୫୬ ।

ଅର୍ଥ:—ବ୍ରହ୍ମ ଗ୍ରହଠାରୁ ମହେଶ୍ୱରଗ୍ରହ ପର୍ଯ୍ୟନ୍ତ ରାଶି ଦଶାବର୍ଷ ଗୁଡିକୁ ଏକତ୍ର କଲେ, ଫଳ ଯାହାହେବ ତାହାହିଁ ପରମାୟୁ ବୋଲି ବୁଝିବାକୁ ହେବ । ଏଥିରେ ମଧ୍ୟ ମହେଶ୍ୱର ଗ୍ରହର ଅଷ୍ଟମେଶର ତ୍ରିକୋଣ ରାଶିଦଶା ସମୟରେ ଅନିଷ୍ଟ ଘଟିଥାଏ ।

ମାରକଗ୍ରହ ଓ ମାରକ କାଳ ବର୍ଣ୍ଣନ:—

ସୂତ୍ର:-ସ୍ୱକର୍ମ-ଚିତ୍-ରିପୁ-ରୋଗନାଥ ପ୍ରାଣୀ-
ମାରକଃ । ୫୭ । ଚିତ୍ନାଥଃ-
ପ୍ରାୟେଣ । ୫୮ ।

**ତଦ୍ଦୃକ୍ଷ ଦଶାୟାଂ ନିଧନମ୍ । ୫୯ ।**

**ତତ୍ରାପି କାଳଦ୍ୱିପୁ ରୋଗ ଚିତ୍ତନାଥା-**

**ପହାରେ । ୭୦ ।**

ଅର୍ଥ—ଆତ୍ମାକାରକ ବା ଜନ୍ମଲଗ୍ନର ତୃତୀୟେଶ, ଷଷ୍ଠେଶ ଦ୍ୱାଦଶେଶ ଓ ଅଷ୍ଟମେଶ ମାନଙ୍କ ମଧ୍ୟରେ ବଳବାନ୍ ଗ୍ରହହିଁ ମାରକ ଅଟେ । ବିଶେଷତଃ ଆତ୍ମକାରକ ବା ଲଗ୍ନର ଷଷ୍ଠେଶ ମାରକ ହୋଇଥାଏ । ମାରକଗ୍ରହ ରାଶିଦଶାରେ ବା ମାରକ ଗ୍ରହସ୍ଥିତ ରାଶିଦଶାରେ ଅଥବା ମାରକ ଗ୍ରହର ନାକ୍ଷତ୍ର ଦଶାରେ ମରଣ କରାଏ । ଏଥିରେ ପୁଣି କାରକ ବା ଜନ୍ମଲଗ୍ନର ସପ୍ତମର ଦ୍ୱାଦଶେଶ ଅଷ୍ଟମେଶ ଓ ଷଷ୍ଠେ-ଶର ଅନ୍ତର୍ଦ୍ଦଶାରେ ମୃତ୍ୟୁ ହୁଏ । ଏମାନଙ୍କ ଭିତରୁ ବଳବାନ୍ ଅନ୍ତର୍ଦ୍ଦଶାହିଁ ମୃତ୍ୟୁକରାଏ ।

ବିଶେଷ:—

"ଷଷ୍ଠାଷ୍ଟମେଶୌଭବତୋ ମାରକାବଷ୍ଟମେଶ୍ୱରଃ,
ପ୍ରାୟେଣ ମାରକୋ ରାଶିଦଶାସ୍ୱବ ବିଶେଷତଃ ।"

ଅର୍ଥାତ୍:—ସାଧାରଣତଃ ଷଷ୍ଠ ଓ ଅଷ୍ଟମାଧିପତି ମାରକ ହୋଇଥାନ୍ତି କିନ୍ତୁ ଅଷ୍ଟମେଶ ମାରକ ରାଶିସ୍ଥ ହେଲେ ପ୍ରଧାନ ମାରକ ହୁଏ ।

ଷଷ୍ଠେଭେ ପାପଭୂୟିଷ୍ଠେ ଷଷ୍ଠେଶୋମୁଖ୍ୟମାରକଃ,
ଷଷ୍ଠାତ୍ ତ୍ରିକୋଣଗୋ ବାଽପି ମୁଖ୍ୟ ମାରକ ଇଷ୍ୟତେ ।"

ଅର୍ଥାତ୍:—ଷଷ୍ଠସ୍ଥାନରେ ବହୁପାପଗ୍ରହ ଯୁକ୍ତ ହେଲେ ବା ଷଷ୍ଠର ତ୍ରିକୋଣରେ ବହୁପାପ ଥିଲେ ଷଷ୍ଠେଶ ପ୍ରଧାନ ମାରକ ହୁଏ ।

[୫୦୫୦୫]

## ଅଥଦ୍ୱିତୀୟାଧ୍ୟାୟେ ଦ୍ୱିତୀୟପାଦଃ

### ପିତ୍ରାଦି କାରକ ବର୍ଣ୍ଣନ:—

ସୂତ୍ର:-ରବି ଶୁକ୍ରୟୋଃ ପ୍ରାଣୀ ଜନକଃ । ୧ ।
ଚନ୍ଦ୍ରାରୟୋ ର୍ଜନନୀ । ୨ ।
ଅପ୍ରାଣ୍ୟପି ପାପଦୃଷ୍ଟଃ । ୩ ।
ପ୍ରାଣିନୀ ଶୁଭଦୃଷ୍ଟେ ତଚ୍ଛୂଳେନଧନଂ-
ମାତାପିତ୍ରୋଃ । ୪ । ତଦ୍ଭାବେବଶେ-
ସ୍ୱ ସ୍ପଷ୍ଟବଲେ । ୫ । ତଚ୍ଛୂଳ ଇତ୍ୟନ୍ୟେ । ୬ ।
ଆୟୁଷି ଗୃନ୍ୟତ୍ । ୭ ।

ଅର୍ଥ:—ରବିଶୁକ୍ର ମଧ୍ୟରେ ଯେ ବଳବାନ୍ ସେ କେବଳ ପିତୃକାରକ ଅଟେ । ଚନ୍ଦ୍ର ଓ ମଙ୍ଗଳ ମଧ୍ୟରେ ଯେଉଁ ଗ୍ରହ ବଳବାନ୍ ତାହାକୁହିଁ ମାତୃକାରକ ରୂପେ ଗ୍ରହଣ କରାଯିବ । ରବି ଶୁକ୍ରମଧ୍ୟରେ ଓ ଚନ୍ଦ୍ର, ମଙ୍ଗଳ ମଧ୍ୟରେ ଯେଉଁ ଗ୍ରହ ଦୁର୍ବଳ ହୋଇ ପାପ ଦୃଷ୍ଟ ହୁଏ, ତାହାକୁ ମଧ୍ୟ କ୍ରମରେ ପିତୃ ଓ ମାତୃକାରକ ବୋଲି ଗ୍ରହଣ କରିବାକୁ ହେବ । କିନ୍ତୁ ସେ

ଦୁର୍ହେଁ ସମବଳ ହେଲେ ଉଭୟଙ୍କୁ କାରକ ରୂପେ ଧରା-ଯିବ । ବଳବାନ୍ ମାତୃ ଓ ପିତୃ କାରକ ଶୁଭଗ୍ରହ ଦ୍ୱାରା ଦୃଷ୍ଟ ହେଲେ ଏହାଙ୍କର ତ୍ରିକୋଣ ରାଶିଦଶାରେ ମାତା ପିତାର ମୃତ୍ୟୁ ସ୍ଥିର କରିବେ । ବଳବାନ୍ ବା ଦୁର୍ବଳ କାରକର ଅଷ୍ଟମେଶ ବଳଶାଳୀ ହୋଇ ଥିଲେ ସେହି ଅଷ୍ଟମେଶର ତ୍ରିକୋଣ ରାଶି ଦଶାରେ ମାତା ପିତାର ମୃତ୍ୟୁ ହୋଇଥାଏ । ଅନ୍ୟ ପ୍ରକାରରେ ମଧ୍ୟ ମାତା ପିତାର ଆୟୁ-ସ୍ଥିର କରିବା ଉଚିତ ।

**ସୂତ୍ର:-ଅର୍କଜ୍ଞେୟୋଗେ ତଦାଶ୍ରିତ ତ୍ରିସ୍ଥେ ଲଗ୍ନ-**
**ମେଷ ଦଶାୟାଂ ପିତୁର୍ଭେତ୍ୟକେ । ୮ ।**
**ବ୍ୟର୍କ ପାପମାତ୍ର ଦୃଷ୍ଟ ୟୋଃ ପଦୋଃ ପ୍ରାଗ୍-**
**ଦ୍ୱାଦଶାବ୍ଦାତ୍ । ୯ । ଗୁରୁ ଶୂଳେ-**
**କଳତ୍ରସ୍ୟ । ୧୦ । ତଚ୍ଛୂଳେ ତେଷାମ୍ । ୧୧ ।**

ଅର୍ଥ:—କାହାର କାହାର ମତରେ ଯଦି ରବି, ବୁଧ ଲଗ୍ନର ଦ୍ୱାଦଶରେ ଥାନ୍ତି ବା ସେହି ଦ୍ୱାଦଶ ସ୍ଥାନ ସିଂହ, ମିଥୁନ ଓ କନ୍ୟା-ରାଶି ହୋଇଥାଏ ତେବେ ଲଗ୍ନରୁ ତୃତୀୟ ବା ପଞ୍ଚମ ରାଶି-ଦଶାରେ ପିତାର ମୃତ୍ୟୁ ହୁଏ । ବଳବାନ୍ ବା ଦୁର୍ବଳ ମାତୃ ପିତୃ କାରକକୁ ରବି ଛଡା ଅନ୍ୟ ପାପଗ୍ରହ ମାନେ ଦେଖିଲେ ବାଳକର ଦ୍ୱାଦଶ ବର୍ଷ ପୂର୍ବରୁ ମାତା-ପିତାର ମୃତ୍ୟୁ ହୋଇଥାଏ । ବୃହସ୍ପତି ଥିବାରାଶିର ତ୍ରିକୋଣ ରାଶିଦଶାରେ ସ୍ତ୍ରୀର ମୃତ୍ୟୁ ସ୍ଥିର କରିବେ । ସେହି-

ପର ଭ୍ରାତା, ପୁତ୍ର ଓ• ମାତୁଳାଦ କାରକ ମାନଙ୍କର ତ୍ରିକୋଣ ରାଶି ଦଶାରେ ସେମାନଙ୍କର ମୃତ୍ୟୁ କଳ୍ପନା କରାଯାଏ ।

ସୂତ୍ର:-କର୍ମଣି ପାପ ଯୁତ ଦୃଷ୍ଟେ ଦୃଷ୍ଟଂ-
ମରଣମ୍ । ୧୨ । ଶୁଂଭଂ ଶୁଭ ଦୃଷ୍ଟି-
ଯୁତେ । ୧୩ । ମିଶ୍ରେ ମିଶ୍ରମ୍ । ୧୪ ।
ଆଦ୍ୟତ୍ୱେନ ରାଜ ମୂଳାତ୍ । ୧୫। ଚନ୍ଦ୍ରେଣ-
ଯକ୍ଷ୍ମଣଃ । ୧୬ । କୁଜେନ ବ୍ରଣ ଶସ୍ତ୍ରାଗ୍ନି-
ଦାହାଦୈୟଃ । ୧୭। ଶନିନା ବାତ-
ରୋଗାତ୍ । ୧୮ । ମନ୍ଦ ମାନ୍ଦିଭ୍ୟାଂ ବିଷ-
ସର୍ପଜଳୋଦ୍ବନ୍ଧନାଦ୍ଭିଃ । ୧୯ । କେତୁନା-
ବିଷୂଚୀ ଜଳରୋଗାଦୈୟ । ୨୦ ।
ଚନ୍ଦ୍ରମାନ୍ଦିଭ୍ୟାଂ ପୂଗମଦାନ୍ନ କବଳା ଦ୍ଭିଃ-
କ୍ଷଣିକମ୍ ।୨୧। ଗୁରୁଣା ଶୋଫାରୁଚ-
ବମନାଦୈୟଃ । ୨୨ । ଶୁକ୍ରେ ମେହତ୍ ।୨୩।
ମିଶ୍ରେ ମିଶ୍ରାତ୍ । ୨୪ ।

ଅର୍ଥ:—ଲଗ୍ନ ବା କାରକର ତୃତୀୟରେ ପାପଯୁକ୍ତ ବା ପାପ ଦୃଷ୍ଟ ହେଲେ ଦୁଷ୍ଟ ( ଅଗ୍ନି ପାତ ଜଳ ବନ୍ଧନାଦରେ ) ମରଣ-ହୁଏ । ଶୁଭ ଯୁକ୍ତ ବା ଶୁଭଦୃଷ୍ଟ ହେଲେ ସୁଖ ( ଜ୍ୱରାଦ-

ରୋଗ ଯୁକ୍ତ ହୋଇ ) ମୃତ୍ୟୁ ହୁଏ । ଉକ୍ତ ସ୍ଥାନରେ ପାପ ଶୁଭ 'ଯୁକ୍ତ ବା ପାପ ଶୁଭ ଦୃଷ୍ଟ ହେଲେ, ମିଶ୍ରିତ ଭାବରେ ମରଣ ହୁଏ । ରବି ତୃତୀୟସ୍ଥ ହେଲେ ରାଜା ଦ୍ୱାରା, ଚନ୍ଦ୍ର ତୃତୀୟରେ ଥିଲେ ଯକ୍ଷ୍ମା ରୋଗରେ, ମଙ୍ଗଳ ଥିଲେ ବ୍ରଣ, ଶସ୍ତ୍ରାଘାତ ବା ଅଗ୍ନି ଦାହରେ ଶନି ଥିଲେ ବାତ ରୋଗରେ ; ଶନି, ଗୁଳିକଯୁତ ତୃତୀୟସ୍ଥ ହେଲେ ବିଷ, ସର୍ପ, ଜଳ ଓ ବନ୍ଧନ ( ଫାସୀ ) ଦ୍ୱାରା, କେତୁ ଥିଲେ ବିଷୂଚିକା ( ହୈଜା ) ବା ଜଳରୋଗରେ ମୃତ୍ୟୁ-ହୁଏ । ଚନ୍ଦ୍ର ଓ ଗୁଳିକ ତୃତୀୟସ୍ଥ ହେଲେ କଣ୍ଠଶୁ-ଷ୍କ ରୋଗ ହେତୁ ଆହାର ସମୟରେ ହଠାତ୍ ମୃତ୍ୟୁ ହୁଏ । ବୃହସ୍ପତି ଥିଲେ ଶୋଫ ଅରୁଚି ଓ ବମନାଦିରେ ଶୁକ୍ର ଥିଲେ ମେହ ରୋଗରେ, ମିଶ୍ରଗ୍ରହ ଥିଲେ ମିଶ୍ର ରୋଗରେ ମୃତ୍ୟୁ ହୋଇଥାଏ ।

**ସୂତ୍ର:-ଚନ୍ଦ୍ର ଦୃଗ୍ ଯୋଗାନଶ୍ଚୟେନ । ୨୫ ।**

**ଶୁଭୈଃ ଶୁଭଦେଶେ । ୨୬ ।**

**ପାପୈଃ କୀକଟେ । ୨୭ ।**

**ଗୁରୁ ଶୁକ୍ରାଭ୍ୟାଂ ଜ୍ଞାନ ପୂର୍ବମ୍ । ୨୮ ।**

**ଅନ୍ୟୈ ରନ୍ୟଥା । ୨୯ ।**

ଅର୍ଥ:—ତୃତୀୟରେ ଯେଉଁ ଯେଉଁ ଗ୍ରହ ଯୋଗ ହୋଇଥିବ ବା ଯେଉଁ ଗ୍ରହମାନେ ଦେଖୁଥିବେ ସେମାନଙ୍କ ସହ ଚନ୍ଦ୍ରର ଦୃଷ୍ଟି ବା ଯୋଗ ହୋଇଥିଲେ ସେହି ରୋଗରେହିଁ ନିଶ୍ଚୟ ମରଣ ହେବ । କାରକ ବା ଲଗ୍ନର ତୃତୀୟରେ

ଶୁଭଯୁକ୍ତ ବା ଶୁଭଦୃଷ୍ଟ ହେଲେ ତୀର୍ଥାଦି ଶୁଦ୍ଧ ସ୍ଥାନରେ ପାପଯୁକ୍ତ ବା ପାପଦୃଷ୍ଟ ହେଲେ ମଗଧାଦି ଦୁଷ୍ଟ ସ୍ଥାନରେ ମରଣ ହୁଏ । ବୃହସ୍ପତି ଓ ଶୁକ୍ରର ସେହି ତୃତୀୟରେ ଯୋଗ ବା ଦୃଷ୍ଟି ଥିଲେ ଜ୍ଞାନ ପୂର୍ବକ ମୃତ୍ୟୁଲାଭ ହୁଏ । କିନ୍ତୁ ଅନ୍ୟାନ୍ୟ ଗ୍ରହମାନଙ୍କର ସେହି ସ୍ଥାନରେ ସମ୍ବନ୍ଧ ଥିଲେ ଅଜ୍ଞାନ ଅବସ୍ଥାରେ ମୃତ୍ୟୁ ହୁଏ ।

**ସୂତ୍ର:-ଲଗ୍ନସ୍ତ୍ରୀଜନକୟୋର୍ମଧ୍ୟେ ଶନିରାହୁ କେତୁଭିଃ-**
**ପିତ୍ରୋର୍ନ ସଂସ୍କର୍ତ୍ତା । ୩୦ ।**
**ଲଗ୍ନାଦି ପୂର୍ବାର୍ଦ୍ଧେ ଜନକାଦ୍ୟପରାର୍ଦ୍ଧେ ।୩୧।**
**ଶୁଭ ଦୃଗ୍ଯୋଗାନ୍ନ । ୩୨ ।**

ଅର୍ଥ:—ଲଗ୍ନଠାରୁ ସପ୍ତମ ପର୍ଯ୍ୟନ୍ତ ଛ'ରାଶି ଭିତରେ ଶନି, ରାହୁ ବା ଶନି କେତୁଥିଲେ ମାତାର ଓ ସପ୍ତମ ଠାରୁ ଦ୍ୱାଦଶ ମଧ୍ୟରେ ଶନି, ରାହୁ ବା ଶନି କେତୁ ଥିଲେ ପିତାର ସଂସ୍କାର ସେହି ପୁତ୍ର କରିପାରେ ନାହିଁ । କିନ୍ତୁ ଶୁଭଦୃଷ୍ଟି ପଡ଼ୁଥିଲେ ଏହି ଯୋଗ ହୁଏ ନାହିଁ ।

—:*:—

## ଅଥଦ୍ୱିତୀୟା ଧ୍ୟାୟସ୍ୟ ତୃତୀୟଃ ପାଦଃ ।

ଦଶାଭେଦ ଓ ନବାଂଶଦଶ ବର୍ଷର:—

**ସୂତ୍ର:-ବିଷମେ ତଦାଦ୍ଦର୍ନ ବାଂଶାଃ । ୧ ।**
**ଅନ୍ୟଥାଽଽଦର୍ଶାଦ୍ଦଃ । ୨ ।**

ଅର୍ଥ:—ଆୟୁ ଗଣନାରେ ନବାଂଶ ଦ୍ରଶା ଓ ସ୍ଥିର ଦଶାର ବିଶେଷ ବିଚାର କରାଯାଏ । ବିଷମ ଲଗ୍ନରେ ଲଗ୍ନାଦି କ୍ରମରେ ଓ ସମଲଗ୍ନ ହେଲେ ଲଗ୍ନ ଦ୍ୱାଦଶାଦି ବିପରୀତ ହିସାବରେ ଦ୍ୱାଦଶ ରାଶିର ନବାଂଶ ଦଶା ଭୋଗ ହୁଏ । ଏହି ଦଶାରେ ପ୍ରତ୍ୟେକ ରାଶି ଦଶାର ମାନ ନ'ବର୍ଷ ଲେଖାଏଁ ଧରା-ଯାଇଛି । ଦଶାଲିଖନ କ୍ରମ:---ଲଗ୍ନସ୍ଫୁଟ ଅଂଶାଦିଦ୍ୱାରା ଦଶାର ଭୁକ୍ତ ଭୋଗ୍ୟ ବର୍ଷାଦି ବାହାର କରି, ଭୋଗ୍ୟ-ମାନକୁ ଜନ୍ମକାଳୀନ ଅବ୍ଦ ଓ ରବିସ୍ଫୁଟ ସହ କ୍ରମରେ ମିଶାଇ ରଖିବା ଉଚିତ ।

ସ୍ଥିର ଦଶା ବିଚାର:—

**ସୂତ୍ର:-ଶଶିନନ୍ଦ ପାବକାଃ କ୍ରମାଦବ୍ଦାଃ ସ୍ଥିର-ଦଶାୟାମ୍ । ୩ । ବ୍ରହ୍ମାଦି ରେଷା । ୪ ।**

ଅର୍ଥ:---ବ୍ରହ୍ମଗ୍ରହ ଯେଉଁଠାରେ ଥିବ ସେହି ରାଶିଠାରୁ ଆରମ୍ଭକରି ଏହି ଦଶା ଭୋଗ ହେବ । ବିଷମ ରାଶିରେ ବ୍ରହ୍ମ ଗ୍ରହ ଥିଲେ କ୍ରମରେ ଓ ସମରାଶିରେ ଥିଲେ ବିପରୀତ ଭାବେ ଦଶା ଭୋଗ ହୁଏ । ଚରରାଶିର ୭ ବର୍ଷ, ସ୍ଥିରରାଶିର ୮ ବର୍ଷ ଓ ଦ୍ୱିସ୍ୱଭାବ ରାଶିର ଦଶାମାନ ୯ ବର୍ଷ ଅଟେ । ଏହାର ମଧ୍ୟ ଭୁକ୍ତ ଭୋଗ୍ୟ ବାହାର କରିବା ଉଚିତ ।

ରାଶିବଳ ଭେଦ ବିଚାର:—

**ସୂତ୍ର:-ଅଥ ପ୍ରାଣଃ । ୫ । କାରକ ଯୋଗଃ ପ୍ରଥମୋ-ଭାନାମ୍ । ୬ । ସାମ୍ୟେ ଭୂୟସ୍ତ୍ୱାଃ । ୭ ।**

**ତତସ୍ତୁଙ୍ଗାଦ୍ୟଃ । ୮ । ନିସର୍ଗତତଃ । ୯ ।**

**ତଦଭାବେ ସ୍ୱାମିନଇତ୍ୟଂ ଭାବଃ । ୧୦ ।**

**ଆଗ୍ରାୟୁତୋଽନ୍ୟ ବିଶେଷାତ୍ । ୧୧ ।**

ସେହିପରି ମଧ୍ୟ ବୃଦ୍ଧୋକ୍ତ ଯଥା:---

"ଅଗ୍ରହାତ୍ତୁ ସଗ୍ରହୋଜ୍ୟାୟାନ୍ ସଗ୍ରହେ ଷ୍ୱଧି କଗ୍ରହଃ,

ସାମ୍ୟେ ଚରସ୍ଥିରଦ୍ୱନ୍ଦାଃ କମାଉସ୍ୟୁର୍ବଳଶାଳିନଃ ।"

**ଅର୍ଥ:**---ଏହି ଗ୍ରନ୍ଥର ବଳବଗ୍ରୁର ରୀତି ଏହି ଯେ, ଗ୍ରହ ନ ଥିବା ରାଶିଠୁ ଗ୍ରହଯୁକ୍ତ ରାଶିହିଁ ବଳବାନ୍ । ଯଦି ଉଭୟ ରାଶିରେ ଗ୍ରହଯୁକ୍ତ ହୋଇଥାନ୍ତି ତେବେ ଅଧିକ ସଂଖ୍ୟକ ଗ୍ରହଥିବା ରାଶିହିଁ ବଳବାନ୍ ଅଟେ । ଉଭୟ ରାଶିରେ ଯଦି ତୁଲ୍ୟ ଗ୍ରହ ଥାନ୍ତି ତେବେ ସେ ଭିତରେ ଉଚ୍ଚଗ୍ରହାଦି ଥିବା ରାଶିହିଁ ବଳବାନ୍ । ଏହାପରେ ନିସର୍ଗବଳ ବିଗ୍ରୁରରେ ଚରରାଶି ଅପେକ୍ଷା ସ୍ଥିରରାଶି ଓ ସ୍ଥିରରାଶି ଠାରୁ ଦ୍ୱିସ୍ୱଭାବ ରାଶି ବଳବାନ୍ ଅଟେ । ଏମାନଙ୍କ ଭିତରେ ଯଦି ତୁଲ୍ୟ ବଳ ହେଉଥାଏ ତେବେ ଯେଉଁ ରାଶିର ସ୍ୱାମୀ ଅଧିକାଂଶରେ ଥିବ ସେହି ରାଶିକୁହିଁ ବଳବାନ ବୋଲି ବୁଝିବାକୁ ହେବ ।

**ସୂତ୍ର:-ପ୍ରାତିବେଶିକଃ ପୁରୁଷେ । ୧୨ । ଇତିପ୍ରଥମଃ । ୧୩ ।**

ଅର୍ଥ:--ଷଷ୍ଠମ ରାଶିସ୍ଥ ହୋଇ ଦ୍ୱିତୀୟ ଦ୍ୱାଦଶରେ ଗ୍ରହ ଥିଲେ ଏହାକୁହିଁ ବଳବାନ୍ ବୋଲି ବୁଝିବ । ଏହା ପ୍ରଥମ ପ୍ରକାର ବଳ କୁହାଗଲା ।

**ସୂତ୍ର:-ସ୍ୱାମିଗୁରୁଜ୍ଞ ଦୃଗ୍ଯୋଗୋ ଦ୍ୱିତୀୟଃ । ୧୪ ।**

ଅର୍ଥ:---ଯେଉଁ ରାଶି ନିଜର ସ୍ୱାମୀ ଓ ବୃହସ୍ପତି, ବୁଧ ଦ୍ୱାରା ଦୃଷ୍ଟ ବା ଯୁକ୍ତ ହୁଏ ସେ ବଳବାନ୍ ହୋଇଥାଏ । ଏହା ଦ୍ୱିତୀୟ ପ୍ରକାର ବଳଅଟେ ।

**ସୂତ୍ର:-ସ୍ୱାମିନ ସ୍ତୃତୀୟଃ । ୧୫ । ସ୍ୱାତ୍ ସ୍ୱାମିନଃ-କଣ୍ଟକାଦ୍ଧ ସ୍ତ୍ୱପାର ଦୌର୍ବଲ୍ୟମ୍ । ୧୬ ।**

ଅର୍ଥ:---ଯାହାର ସ୍ୱାମୀ ବଳବାନ୍ ହୋଇଥିବ ସେହି ରାଶିକୁ ବଳବାନ୍ ବୋଲି ଧରିବାକୁ ହେବ । ଏହା ତୃତୀୟ ପ୍ରକାର ବଳଅଟେ । ଯାହାର ଅଧିପତି ଆତ୍ମକାରକର କେନ୍ଦ୍ର ପଣଫର ଓ ଆପୋକ୍ଲିମରେ ଥାଏ ସେ କ୍ରମଶଃ ଦୁର୍ବଳ ହୋଇ ପଡେ । ଅର୍ଥାତ୍:---କେନ୍ଦ୍ରସ୍ଥ ପୂର୍ଣ୍ଣବଳ, ପଣଫରରେ ଅର୍ଧବଳ ଓ ଆପୋକ୍ଲିମରେ ଅଳ୍ପ ବଳଶାଳୀ ହୁଏ ।

**ସୂତ୍ର:-ଚତୁର୍ଥଃ ପୂର୍ବକ୍ଷେ । ୧୭ ।**

ଅର୍ଥ:---ଷଷ୍ଠମରାଶି ନିମନ୍ତେ ଚତୁର୍ଥ ପ୍ରକାର ବଳ ଅଗରେ କୁହାଯିବ ।

## ମୃତ୍ୟୁ-ଶୂଳ ଦଶା ବିଗୃରः—

ସୂତ୍ର:-ପିତୃଲାଭ ପ୍ରଥମ ପ୍ରାଣୟାଦ୍ଵଃ ଶୂଳଦଶା-
ନର୍ଯାଣେ । ୧୮ । ପିତୃ ଲାଭ ପୁତ୍ର-
ପ୍ରାଣୟାଦ୍ଵଃ ପିତୃଃ । ୧୯ । ଆଦର୍ଶାଦ୍ଵ-
ମାତୁଃ । ୨୦ । କର୍ମାଦ୍ଵ ଭ୍ରାତୁଃ । ୨୧ ।
ମାତ୍ରାଦ୍ଵ ଭଗିନୀ ପୁତ୍ରୟୋଃ । ୨୨ ।
ବୟସ୍ଥାଦ୍ଵ ଜ୍ୟେଷ୍ଠସ୍ୟ । ୨୩ ।

**ଅର୍ଥ:**---ମୃତ୍ୟୁ ବିଗୃର ନିମନ୍ତେ ଲଗ୍ନ ଓ ସପ୍ତମ ଗ୍ଶି ମଧ୍ୟରେ ଯେଉଁ ଗ୍ଶି ପ୍ରଥମ ପ୍ରକାରୋକ୍ତ ବଳରେ ବଳୀ, ତାଠାରୁହିଁ ଶୂଳ ଦଶା ବିଗୃର କରାଯିବ । କମୋକ୍ରମ ଗଣନା ଦ୍ୱାର ଲଗ୍ନ ଓ ସପ୍ତମର ନବମ ଗ୍ଶି ଭିତରେ ଯେ ବଳବାନ୍ ତାଠାରୁ ପିତୃ ଶୂଳଦଶାବିଗୃର କରିବେ । ସେହିପରି ଲଗ୍ନ ସପ୍ତମର ବଳବାନ୍ ଚତୁର୍ଥ ଗ୍ଶିରେ ମାତା, ତୃତୀୟ ଗ୍ଶିରେ କନିଷ୍ଠ ଭ୍ରାତା; ପଞ୍ଚମ ଗ୍ଶିରେ ପୁତ୍ର ଓ ଭଗିନୀ, ବଳବାନ୍ ଏକାଦଶ ଗ୍ଶିଠାରୁ ମଧ୍ୟ ଜ୍ୟେଷ୍ଠ ଭ୍ରାତାର ଶୂଳ ଦଶା ବିଚାର କରିବେ ।

ସୂତ୍ର:-ପିତୃବତ୍ ପିତୃବର୍ଗେ । ୨୪ ।
ମାତୃବନ୍ ମାତୃବର୍ଗେ । ୨୫ ।

ଅର୍ଥ:—ନବମାଦ ରାଶିରେ ଯେପରି ପିତାର ନିର୍ଯାଣ ( ମରଣ ) ବିଚାର କରାଯାଇଅଛି । ସେହିପରି ସେହି ରାଶିରେହିଁ ପିତୃବ୍ୟାଦଙ୍କର ମୃତ୍ୟୁ ଦଶା ବିଚାର କରାଯିବ । ମାତୃ ଶୂଳ ଦଶାରେ ମଧ୍ୟ ମାତୃ ବର୍ଗର ଅନିଷ୍ଟ ବିଚାର କରା-ଯିବ ।

ବ୍ରହ୍ମ ଦଶା ବିଚାର:—

**ସୂତ୍ର:-ବ୍ରହ୍ମାଦିଃ ପୁରୁଷେ ସମା ଦାସାନ୍ତାଃ । ୨୬ ।**

**ସ୍ଥାନ ବ୍ୟତିକରଃ । ୨୭ ।**

ଅର୍ଥ:—ବିଷମ ରାଶିରେ ବ୍ରହ୍ମଗ୍ରହ ଥିଲେ କ୍ରମରେ ଓ ସମରାଶିରେ ଥିଲେ ଉତ୍କ୍ରମରେ ସେହିଠାରୁ ତାର ଷଷ୍ଠେଶ ପର୍ଯ୍ୟନ୍ତ ଦଶା ଭୋଗ ହୁଏ । ବିଷମ ରାଶିରେ ବ୍ରହ୍ମଗ୍ରହ ଥିଲେ ଏହାର ସ୍ଥାନଠାରୁ ଷଷ୍ଠେଶ ସ୍ଥାନରୁ ଫେଡ଼ିବ ଓ ସମରାଶି ହୋଇ ଥିଲେ ସେହି ସ୍ଥାନରୁ ଷଷ୍ଠେଶ ସ୍ଥାନକୁ ଫେଡ଼ି ଶେଷରାଶି ତୁଲ୍ୟ ଦଶା ବର୍ଷ ସ୍ଥିର କରିବେ । ଅବଶିଷ୍ଟ ଅଂଶାଦିକୁ ଦୁଇରେ ଗୁଣି ପଞ୍ଚରେ ଭାଗ ଦେଲେ ଦିନାଦି ସ୍ଥିର ହେବ ।

ଚତୁର୍ଥ ବଳ ଓ ଚରଦଶା:—

**ସୂତ୍ର:-ପାପଦୃଗ୍‌ଯୋଗ ସ୍ତୁଙ୍ଗାଦ ଗ୍ରହଯୋଗଃ ।୨୮।**

**ପଞ୍ଚମେ ପଦକ୍ରମାତ୍ ପ୍ରାକ୍ ପ୍ରତ୍ୟେକ୍ ତ୍ୱଂ-**

**ଚର୍‌ଦଶାୟାମ୍ । ୨୯ । ଅତ୍ର ଶୁଭଃ-**

**କେତୁଃ । ୩୦ ।**

ଅର୍ଥ:—ପାପଗ୍ରହ ଯେ କୌଣସି ରାଶିରେ ଯୋଗ ବା ଦୃଷ୍ଟି ହୋଇଥିଲେ ସେହି ରାଶି ବଳବାନ୍ ହୁଏ । ସେହିପରି ଉଚ୍ଚ ମୂଳ ତ୍ରିକୋଣାଦି ହୋଇଥିବା ଶୁଭ ଗ୍ରହର ଦୃଷ୍ଟି ବା ଯୋଗ ହୋଇଥିଲେ ମଧ୍ୟ ସେହି ରାଶି ବଳଶାଳୀ ହୋଇଥାଏ । ଏହା ଚତୁର୍ଥ ପ୍ରକାର ବୋଲିଅଛି । ଲଗ୍ନର ନବମ ବିଷମ ପଦରେ ଥିଲେ ଲଗ୍ନାଦି କ୍ରମରେ ଓ ସମ ପଦରେ ଥିଲେ ବିପରୀତ ହିସାବରେ ଚରଦଶା ଲେଖାଯାଏ । ଏହି ଗ୍ରନ୍ଥରେ କେତୁ ଶୁଭ ଦାୟକ ଅଟେ ।

...o...

## ଅଥ ଦ୍ୱିତୀୟାଧ୍ୟାୟସ୍ୟ ଚତୁର୍ଥ ପାଦଃ

<u>ଦଶା ପ୍ରକାରଣ ବିସ୍ତର:—</u>

**ସୂତ୍ର:-ଦ୍ୱିତୀୟଂ ଧ୍ରୁବବଳଂ ଚରନବମାଂଶେ । ୧ ।**

**ଦଶାଶ୍ରୟୋ ଦ୍ୱାରମ୍ । ୨ ।**

**ତତସ୍ତାବତିଥଂ ବାହ୍ୟମ୍ । ୩ ।**

ଅର୍ଥ:—ଚର ରାଶିର ନବାଂଶ ଦଶା ବିସ୍ତରରେ ଦ୍ୱିତୀୟ ପ୍ରକାର ଧ୍ରୁବ ବଳ ଦେଖିବା ଉଚିତ । ଦଶାଶ୍ରିତ ରାଶିକୁ ଅର୍ଥାତ୍:-

( ଚର ସ୍ଥିର ଦ୍ୱନ୍ଦ୍ୱ ଭେଦରେ ଯେଉଁ ଦଶା ଯେଉଁ ରାଶିରୁ ଆରମ୍ଭ ହେଉଥିବ ତାହାକୁ) 'ଦ୍ୱାର' କୁହାଯିବ । ପରାଶର ମଧ୍ୟ କହିଛନ୍ତି:—

"ଯସ୍ମିନ୍ କାଳେ ଯସ୍ୟ ରାଶେଃ ସଂଦାସାଚ ଚରସ୍ଥିରା,
ପର୍ଯ୍ୟାୟ ସ୍ତଦ୍ଦଶାନ୍ତ୍ୟାଂ ଚ ସଦ୍ରାଶିର୍ଦ୍ଵାରମୁଚ୍ୟତେ ।"

ପ୍ରଥମ ଦଶାପ୍ରଦ ରାଶିଠାରୁ ଦ୍ୱାର ରାଶି ଯେତିକି ଦୂରରେ ଥିବ ତାଠାରୁ ସେତିକି ସଂଖ୍ୟା ଗଣିଲେ ଯେଉଁ ରାଶି ହେବ ତାହାକୁହିଁ ବାହ୍ୟରାଶି କୁହାଯାଏ ।

**ସୂତ୍ର:-ତୟୋଃ ପାପେବନ୍ଧ ଯୋଗାଦି । ୪ ।**

**ସ୍ୱକ୍ଷେ୍ଽତ୍ରସ୍ୟ ତସ୍ମିନ୍ ନୋପଜୀବସ୍ୟ । ୫ ।**

ଅର୍ଥ:—ଦ୍ୱାର, ବାହ୍ୟ ରାଶିରେ ପାପ ଯୁକ୍ତ ହେଲେ ସେହି ଦଶାରେ ବନ୍ଧନାଦ କ୍ଳେଶ ହୋଇଥାଏ । କିନ୍ତୁ ଉକ୍ତ ରାଶିରେ ପାପଗ୍ରହ ସ୍ୱଗୃହୀ ହୋଇ ବୃହସ୍ପତି ଯୁକ୍ତ ହୋଇଥିଲେ ବନ୍ଧନାଦ ଦୁଃଖ ହୁଏନାହିଁ ।

**ସୂତ୍ର:-ଭଗ୍ରହ ଯୋଗୋକ୍ତଂ ସର୍ବମସ୍ମିନ୍ । ୬ ।**

ଅର୍ଥ:—ରାଶି-ଗ୍ରହ ଯୋଗରେ ଯେଉଁ ଫଳ କୁହା ଯାଇଅଛି, ତାହା ସବୁ ଏହି ଦ୍ୱାର ରାଶି ଦଶାରେ ମଧ୍ୟ ଭୋଗ ହୁଏ ।

କେନ୍ଦ୍ର ଦଶା ବିଚାର:—

---

**ସୂତ୍ର:-ପିତୃଲାଭ ପ୍ରାଣିତୋଽୟମ୍ । ୭ ।**

**ପ୍ରଥମେ ପ୍ରାକ୍ ପ୍ରତ୍ୟକ୍ତ୍ୱମ୍ । ୮ ।**
**ଦ୍ୱିତୀୟେ ରବତଃ । ୯ । ପୃଥକ୍ କ୍ରମେଣ-**
**ତୃତୀୟେ ଚତୁଷ୍ଟୟାଦି । ୧୦ ।**

ଅର୍ଥ:—ଲଗ୍ନ ଓ ସପ୍ତମର ଲେନେଇ କେନ୍ଦ୍ର ଦଶା ଗଠିତ ହୁଏ । ବିଷମ ଲଗ୍ନରେ କ୍ରମ ଓ ସମଲଗ୍ନରେ ଉତ୍କ୍ରମ (ବିପରୀତ) ସ୍ୱଭାବରେ ଗଣନା କରାଯାଏ ହୁଏ । ଚର ଲଗ୍ନରେ ବଳବାନ୍ ଲଗ୍ନ ବା ସପ୍ତମଠାରୁ କ୍ରମୋତ୍କ୍ରମ ମତରେ ଦ୍ୱାଦଶ ରାଶିର ଦଶା ଭୋଗ ହୁଏ । ସ୍ଥିରଲଗ୍ନରେ ବଳବାନ୍ ଲଗ୍ନ ବା ସପ୍ତମର କ୍ରମୋତ୍କ୍ରମ ଭାବେ ଷଷ୍ଠ ରାଶିରୁ ଦଶାରମ୍ଭ ହୁଏ । ଦ୍ୱିସ୍ୱଭାବଲଗ୍ନରେ ବଳବାନ୍ ଲଗ୍ନ ବା ସପ୍ତମରୁ କ୍ରମୋତ୍କ୍ରମ ସ୍ୱଭାବରେ କେନ୍ଦ୍ର, ପଣଫର ଓ ଅପୋକ୍ଲିମ ଗତ ରାଶିମାନଙ୍କର ଦଶା କ୍ରମରେ ଭୋଗ ହୁଏ । ସ୍ଥିର ଓ ଦ୍ୱିସ୍ୱଭାବ ଲଗ୍ନରେ ପ୍ରଥମରେ କେନ୍ଦ୍ର ତାପରେ ଅପୋକ୍ଲିମ ଶେଷରେ ପଣଫର ରାଶିମାନଙ୍କ ଦଶା ଭୋଗ ହୁଏ । ଏଠାରେ ପ୍ରତ୍ୟେକ ଦଶାର ବର୍ତ୍ତମାନ ୯ ବର୍ଷ ଲେଖଏଁ ଧରାହିବ ।

<u>କାରକ କେନ୍ଦ୍ର ଦଶା ବର୍ଣ୍ଣନ:—</u>

ଗ୍ରହ ଓ ରାଶି ଭେଦରେ କାରକ କେନ୍ଦ୍ର ଦଶା ଦୁଇପ୍ରକାର, ପ୍ରଥମତଃ କାରକର କେନ୍ଦ୍ରାଦି ରାଶିମାନଙ୍କୁ ନେଇ ଗୋଟିଏ ଦଶା ଭୋଗ ହୁଏ । ଅନ୍ୟଟି ଲଗ୍ନର କେନ୍ଦ୍ର ଗତ ରାଶି ମାନଙ୍କୁ ଧରି, ଭୋଗ ହୋଇ ଥାଏ । ଯଥା:—

**ସୂତ୍ର:-ସ୍ୱକେନ୍ଦ୍ରସ୍ଥାଦୟଃ ସ୍ୱାମିନୋନବାଂଶାନାମ୍ ।୧୦।**

ଅର୍ଥ: କମୋଲ୍ଲମ ପକ୍ଷରେ ବିଷମ ରାଶିରେ କାରକ ଲଗ୍ନ ହେଲେ କେନ୍ଦ୍ର, ପଣଫର ଓ ଆପୋକ୍ଲିମ ରାଶିଦଶା ଓ ସମରାଶିରେ କାରକ ଲଗ୍ନ ହେଲେ କେନ୍ଦ୍ର, ଅପୋକ୍ଲିମ ଓ ପଣଫର ରାଶିଦଶା କ୍ରମରେ ଭୋଗ ହୁଏ । ଏଥିରେ ପ୍ରଥମେ ବଳବାନ ରାଶି ପରେ ଦୁର୍ବଳ ରାଶି ଭୋଗହୁଏ । ପ୍ରତ୍ୟେକ ରାଶିର ଭୋଗକାଳ ୯ ବର୍ଷ ।

**ସୂତ୍ର:-ପିତୃଚତୁଷ୍ଟୟସ୍ୟ ବୈଷମ୍ୟବଳାଶ୍ରୟସ୍ଥିତଃ ।୧୧।**

ଅର୍ଥ:—ଦ୍ୱିତୀୟ ପ୍ରକାରରେ ଲଗ୍ନ-କେନ୍ଦ୍ରରେ ଯେଉଁ ରାଶି ବଳବାନ୍ ହୋଇଥାଏ ତାହାଠାରୁ ଆରମ୍ଭ କରି ଦଶା ଭୋଗହୁଏ । ବଳବାନ୍ ରାଶି ବିଷମ ହେଲେ କ୍ରମରେ ସମ ହେଲେ ଉତ୍କ୍ରମରେ କେନ୍ଦ୍ରାଦି ଦଶା ଗଣନା ହୁଏ ।

କାରକ କେନ୍ଦ୍ରାଦି ଦଶାରେ ଅନ୍ତର୍ଦଶା ବିଚାର:—

---

ଏଥିରେ ପ୍ରଥମେ କାରକର ଦଶା, ତାପରେ କାରକରେ ଯୁକ୍ତ ଗ୍ରହ ଦଶା ସେଥିରେ କାରକର କେନ୍ଦ୍ରାଦିରେ ଥିବା ଗ୍ରହମାନଙ୍କ ଦଶା ବିଚାର କରାଯାଏ । ଯଥା:—

**ସୂତ୍ର:-ସତଲ୍ଲାଭୟୋର୍ବର୍ତ୍ତତେ ।୧୩।**

**ସ୍ୱାମିବଲ ଫଲାନିଚ ପ୍ରାଗ୍‌ବତ୍ ।୧୪।**

ସେହିପରି ମଧ:—

"ଲଗ୍ନାଦ୍ଧା କାରକାଦ୍ଧାପି ଯେ ଗ୍ରହାସ୍ତୁ ବା ଦଶାଂ ନୟେତ୍ତୁ ଉଭୟୋର୍ବହୁଧା ସଂଖ୍ୟା କାରକାଖ୍ୟ ଦଶାସମା ।

ତଦ୍ଦ୍ୟୁକ୍ରାନାଂତୁ ତତ୍ତୁଲ୍ୟଂ ପ୍ରତେ୍ୟକଂସ୍ୱଂଦଶାନ୍କ୍ରମାତ୍
ଗ୍ରହାତ୍ କାରକପର୍ଯ୍ୟନ୍ତଂ ସଂଖ୍ୟାନ୍ୟସ୍ୟ ଦଶାଂବଦେତ୍ ।
କାରକଂ ସ୍ୱଦ୍ୱ୍ୟତ ସ୍ଥାନେୌ ତତ୍ତଲେନ୍ଦ୍ରାଦ୍ଧ ସ୍ଥିତା ସ୍ତତଃ
ଦଶାଃକ୍ରମେଣ ବିଜ୍ଞେୟା ଶୁଭାଶୁଭ ଫଳପ୍ରଦାଃ ।"

ଅର୍ଥ—ଲଗ୍ନ ବା ସପ୍ତମଠାରୁ କାରକାଶ୍ରିତ ରାଶି ପର୍ଯ୍ୟନ୍ତ ରାଶି ଅଧିକ ସଂଖ୍ୟାକ୍ତ କାରକର ଦଶା ବର୍ଷ ରୂପେ ସ୍ଥିର କରିବେ । କାରକ ସହ ଥିବା ଗ୍ରହର ତତ୍ତୁଲ୍ୟ ଦଶା ବର୍ଷ ହେବ । ଅନ୍ୟ ଗ୍ରହମାନଙ୍କର ମଧ୍ୟ କ୍ରମ ଅନୁସାରେ କାରକ ପର୍ଯ୍ୟନ୍ତ ରାଶି ଅଧିକ ସଂଖ୍ୟାକୁ ଦଶା ବର୍ଷ ରୂପେ ସ୍ଥିର କରିବେ । ଗ୍ରହମାନଙ୍କର ବଳାବଳ ନେଇ ଫଳ ବିଚାର ପୂର୍ବ ଅନୁସାରେ ସ୍ଥିର କରିବେ ।

## ଅନ୍ତର୍ଦ୍ଦଶା ବିଭାଗ:—

"ପ୍ରତ୍ୟେକଂ ନବବର୍ଷାଣି କାରକାଶ୍ରିତ ରାଶିତଃ
ଜନ୍ମ ସମ୍ପତ୍ତିବିପତ୍ କ୍ଷେମଃ ପ୍ରତ୍ୟରିଃ ସାଧକୋବଧଃ ।
ମୈତ୍ରଂ ପରମ ମୈତ୍ରଂ ଚେତ୍ୟେବମନ୍ତର୍ଦ୍ଦଶାଂନୟେତ୍ ।"

ଅର୍ଥାତ୍:—ଏଥିରେ ପ୍ରତେ୍ୟକ ଦଶାମାନଙ୍କୁ ଜନ୍ମ, ସମ୍ପତ୍ ଭେଦରେ ନ'ଭାଗରେ ବିଭକ୍ତ କରି ଅନ୍ତର ସ୍ଥିର କରାଯାଇଛି ।

## ମଣ୍ଡୂକ ଦଶା ବିଚାର:---

**ସୂତ୍ର:-ସ୍ଥୂଳାଦର୍ଶ ବୈଷମ୍ୟାଶ୍ରୟୋ-
ମଣ୍ଡୂକ ସ୍ତ୍ରୀକଣ୍ଟଃ । ୧୫ ।**

ଅର୍ଥ:---ଲଗ୍ନ ସପ୍ତମ ମଧ୍ୟରେ ଯେ ବଳବାନ୍ ତାଠୁଁ ଆରମ୍ଭ କରି ସମସ୍ତଙ୍କ ଦଶା ବିଚାର କରାଯାଏ । ବିଷମ ଲଗ୍ନରେ କେନ୍ଦ୍ର, ପଣଫର ଓ ଆପୋକ୍ଲିମ ରାଶିର କ୍ରମରେ ଦଶା ଭୋଗହୁଏ । ସମ ଲଗ୍ନରେ କେନ୍ଦ୍ର, ଅପୋକ୍ଲିମ ଓ ପଣଫର ରାଶି ଦଶା ଭୋଗ ହୋଇଥାଏ । ଏଥିରେ କେନ୍ଦ୍ର ରାଶି ଦଶା ବର୍ଷ୭, ପଣଫର ବର୍ଷ୮, ଅପୋକ୍ଲିମ ଦଶା ବର୍ଷ୯ ଅଟେ ।

## ସୂତ୍ର:-ନିର୍ଯାଣ ଲାଭାଦ ଶୂଲଦଶା ଫଳେ ।୧୬।

## ପୁରୁଷେ ସମାଃ ସାମାନ୍ୟତଃ ।୧୭।

ଅର୍ଥ:---ଫଳ ଜାଣିବାପାଇଁ ନିର୍ଯାଣ ରାଶିର ସପ୍ତମରୁ କ୍ରମୋତ୍କ୍ରମ ଭେଦରେ ଶୂଳ 'ଦଶା ବିଚାର କରାଯାଏ । ଲଗ୍ନେଶ ଓ ଅଷ୍ଟମେଶରୁ ଯେଉଁ ଛଅଟୋଟି ସ୍ଥାନ ଦ୍ୱାରା ଆୟୁ ବିଚାର କରାଯାଇଅଛି, ତନ୍ମଧ୍ୟରୁ ବଳବାନ ରାଶିକୁହିଁ ନିର୍ଯାଣ (ମରଣ) ରାଶି କୁହାଯାଏ ।

ନକ୍ଷତ୍ର ଦଶା ବିଚାର:---

---

## ସୂତ୍ର:-ସିଦ୍ଧା ଉଡୁଦାୟେ । ୧୮ ।

ଅର୍ଥ:---ବିଂଶୋତ୍ତରୀ ଓ ଅଷ୍ଟୋତ୍ତରୀ ଦଶା ଅନ୍ୟଗ୍ରନ୍ଥାନୁସାରେ ବିଚାର କରିବେ ।

ଯଥା:---(ନକ୍ଷତ୍ରରୁ ଦଶାପତି ବିଚାର, ବିଂଶୋତ୍ତରୀ ମତରେ)

"ଗଣୟେତ୍ କୃତ୍ତିକାଶ୍ଚ ଯାବତ୍ତବୈ ଜନ୍ମ ଭାବଧି ।
ନବଭିସ୍ତୁ ହରେତ୍ ଭାଗଂ ଶେଷଂ ଗ୍ରହ ଦଶା ଭବେତ୍ ।

ଅଂ, ଚନ୍ଦ୍, କୁ, ସ, ଜୀ, ଶ, ବୁ, କେ, ଶୁ, ପୂର୍ବା-
ଦମାଦଶବର୍ଷ ସ୍ଵଜନ୍ମାଧୀନଂ ଥାଃ ।"
କୃତ୍ତିକା ନକ୍ଷତ୍ରରୁ ଜନ୍ମ ନକ୍ଷତ୍ର ପର୍ଯ୍ୟନ୍ତ ଗଣି ୯ ରେ ଭାଗ ଦେଲେ ଅବଶିଷ୍ଟ ଏକାଦି ଅଙ୍କରେ ରବି, ଚନ୍ଦ୍ର, ମଙ୍ଗଳ, ରାହୁ, ବୃହସ୍ପତି, ଶନି, ବୁଧ, କେତୁ ଓ ଶୁକ୍ରର ଦଶା ହୁଏ ।

ବିଂଶୋତ୍ତରୀ ଦଶା-ବର୍ଷ:---

ରସା ଅଷ୍ଟାଦଶ ଶୈଳା ଦସୁବସ୍ୱଙ୍କା ଭୂପତିମିତା
ନବେଳାଃ ଶୈଳେଳା ନଗପଙ୍କ୍ତିମିତା ବିଂଶତିମିତାଃ ।
ଦେୟାତ୍ରିନାଥାନଳ ତମସିତ ଗୁରୌ ଭାନୁତନୟେ
ବୁଧେ କେତୌ ଶୁକ୍ରେ କ୍ରମଶ ଉଦିତା ପାକଶରଦାଃ ।
ରବି ୬ବର୍ଷ, ଚନ୍ଦ୍ର ୧୦ବର୍ଷ, ମଙ୍ଗଳ ୭ବର୍ଷ, ରାହୁ ୧୮ବର୍ଷ, ବୃହସ୍ପତି ୧୬ବର୍ଷ, ଶନି ୧୯ବର୍ଷ, ବୁଧ ୧୭ବର୍ଷ, କେତୁ ୭ବର୍ଷ, ଓ ଶୁକ୍ର ୨୦ବର୍ଷ ଦେଇଥାଏ ।

ଅଷ୍ଟୋତ୍ତରୀ ଦଶା ଵର୍ଷ:---

ଷଟ୍ ସୂର୍ଯ୍ୟସ୍ୟ ଦଶାବ୍ଦୋପି ଶଶିନୋ ଦଶ ପଞ୍ଚ
ଅଷ୍ଟାବଙ୍ଗାରକେ ଯୋଜ୍ୟା ବୁଧେ ସପ୍ତଦଶସ୍ମୃତାଃ ।
ଶନୈଶ୍ଚରେ ଦଶ ପ୍ରୋକ୍ତା ଗୁରୋରେକୋନ ବିଂଶତିଃ
ରାହୋର୍ଦ୍ଵାଦଶ ବର୍ଷାଣି ଭୃଗୋରେକୋନ ବିଂଶତିଃ ।
କୃତ୍ତିକାଦି ନିଯୁଞ୍ଜୀତ ସୋମୋରୌଦ୍ର ଚତୁଷ୍ଟୟେ
ମଘାଦି ନିଷେଦ୍ ଭୌମେ ବୁଧୋହସ୍ତା ଚତୁଷ୍ଟୟେ ।
ଅନୁରାଧା ଦଶଯେ ସୌରି ଗୁରୁର୍ଭ୍ୟନୂକ୍ତ ଚାତୁଷ୍ଟୟେ
ଧନିଷ୍ଠା ନିଚଯେ ରାହୁଃ ଶୁକ୍ରଃ ଶେଷଚତୁଷ୍ଟୟେ ।

## ଚଂନ୍ଦ୍ରରୁ ସ୍ପଷ୍ଟ ବୁଝିହେବ

| ର | ଚ | ମ | ବୁ | ଶ | ବୃ | ରାଂ | ଶୁ |
|---|---|---|---|---|---|---|---|
| ୩ | ୬ | ୧୦ | ୧୩ | ୧୭ | ୨୦ | ୨୩ | ୨୬ |
| ୪ | ୭ | | ୧୪ | ୧୮ | ୨୧ | ୨୪ | ୨୭ |
| | | | | | ଅଭିଜିତ୍ | | |
| ୫ | ୮ | ୧୨ | ୧୫ | ୧୯ | ୨୨ | ୨୫ | ୧ |
| | ୯ | | ୧୬ | | | | ୨ |
| ବ୬ | ବ୧୫ | ବ୮ | ବ୧୭ | ବ୧୦ | ବ୧୯ | ବ୨୨ | ବ୨୧ |

ଉଯାତ ଉଭୋଗ ବସ୍ତୁର:---

ଗତର୍କ୍ଷ ନାଡ଼ୀ ଖରସେଷୁଶୁଦ୍ଧା ସୂର୍ଯୋଦୟାଦିଷ୍ଟ ଘଟୀ ସ୍ତୁଯୁକ୍ତା
ଉଯାତ ସଞ୍ଜ୍ଞା ଭବତୀହ ତସ୍ୟ ନକ୍ଷର୍ଷ ନାଡ଼ୀ ସହିତା ଉଭୋଗଃ ।

୬୦ ଦଣ୍ଡରୁ ଗତନକ୍ଷତ୍ରର ଦଣ୍ଡାଦକୁ ଫେଡ଼ଦେଇ ଅବଶିଷ୍ଟ ଦଣ୍ଡାଦକୁ ଇଷ୍ଟ ଦଣ୍ଡରେ ମିଶାଇଲେ ଭଯାତ (ଲୁପ୍ତଭୋଗ) ହୁଏ । ଏବଂ ସେହି ଶେଷରେ ଇଷ୍ଟକାଳୀନ ବା ଜନ୍ମ ନକ୍ଷତ୍ରର ଦଣ୍ଡାଦ ମିଶାଇଲେ ଭଭୋଗ ( ଲୁପ୍ତାଦ୍ୟନ୍ତ ) ହୁଏ । ପୁଣି :---

ଗତର୍କ୍ଷ ପ୍ରମାଣା ଦ୍ୟଦାଭୀଷ୍ଟ ମ ନାନ, ନ ସ୍ପଲ୍ପଂଭବେଦୁର୍ଦ୍ଧି-ସାଧଂଭଦେଦମ୍ ।
ଅଭୀଷ୍ଟାଦ୍‌ବଶୋଧଂ ଗତର୍କ୍ଷପ୍ରମାଣଂ, ଭଯାତଂ ଭଭୋଗୋ ଭବେତତ୍ର ପୂର୍ବବତ୍ୟା ।”

ଯଦି ଗତନକ୍ଷତ୍ର ମାନରୁ ଇଷ୍ଟଦଣ୍ଡାଦ ଅଧିକ ଥାଏ ତେବେ ଇଷ୍ଟଦଣ୍ଡରୁ ଗତନକ୍ଷତ୍ର ଦଣ୍ଡ ଫେଡ଼ିଲେ ଫେଡ଼ାଣ ଫଳ ହିଁ ଭଯାତ (ଭୁକ୍ତଭୋଗ) ହେବ । ପୂର୍ବପରି ଭଭୋଗ ସାଧନ କରାଯିବ ।

ଦଶା ବର୍ଷାନୟନ:---

ଭଯାତ ନାଡ଼ୀ ନିହତା ଦଶାବ୍ଦୈର୍ଭଭୋଗ ନାଡ୍ୟା ବିହୃତା-ଫଳଂଯତ୍ର । ବର୍ଷାଦିକଂ ଭୁକ୍ତମିହ ପ୍ରଦିଷ୍ଟୌ ର୍ଭୋଗ୍ୟଂ-ଦଶାବ୍ଦାନ୍ତରିତଂ କ୍ରମୁକ୍ତଂ ।”

ଦଶା ବର୍ଷମାନରେ ଭଯାତ ଦଣ୍ଡାଦକୁ ଗୁଣି ଭଭୋଗ ଦଣ୍ଡାଦରେ ଭାଗଦେଲେ ସେହି ଦଶାରେ ଭୁକ୍ତମାନ ବର୍ଷ ମାସାଦି ହେବ ।

ଯୋଗାର୍ଧ ଦଶା ବିଚାର:—

ସୂ,ଏ:-ଜଗତ୍ରସ୍ଥୁ କ୍ଷୋରଧଂ ଯୋଗାର୍ଧେ ।୧୯।

ପରାଶର ମତ:---

ଚରସ୍ଥିର ଦଶାବତ୍ର ଏଂ ତ ଯୋଗଂ ସମାଚରେତ୍
ତସ୍ୟାର୍ଥଂ ଚ ସମାସୂତ୍ୟା ଯୋଗାର୍ଧାଖ୍ୟା ତୁସାଦଶା ।
ଅର୍ଥ:—ଚରଦଶା ଓ ସ୍ଥିର ଦଶାର ଯେ ଜାତ ମାନଙ୍କୁହିଁ "ଯୋଗାର୍ଦ୍ଧ" ଦଶା କୁହାଯାଏ ।

ଯୋଗାର୍ଧଦଶାରମ୍ଭ ବିଚାର:---

## ସ୍ଥୂଳାଦଶବୈଷମ୍ୟାଶ୍ରୟ ମେତତ୍ ।୨୦।

ଅର୍ଥ:—ଏହି ଯୋଗାର୍ଦ୍ଧ ଦଶା ଲଗ୍ନରୁ ସମୋତ୍କ୍ରମ ଭେଦରେ ଆରମ୍ଭ ହୁଏ । ପରାଶର ମତ:---

ଲଗ୍ନ ସପ୍ତଶର୍ଯୋର୍ମଧ୍ୟେ ଜାନୀୟାତ୍ ବଲାଶ୍ରୟମ୍
ଲଗ୍ନେ ବଲ ଯୁତେ ଲଗ୍ନାତ୍ ଦଶାରମ୍ଭଂ ପ୍ରକାଶୟେତ୍ ।
ତସ୍ମାତ୍ ସପ୍ତମ ବାର୍ଷ୍ଣାତ୍ୟଂ ଦଶାରମ୍ଭଂ ପ୍ରକଲ୍ପୟେତ୍ ।
ଅର୍ଥାତ୍:--ଲଗ୍ନ ସପ୍ତମ ମଧ୍ୟରେ ଯେ ବଳବାନ୍ ହେବ ତାହାଠାରୁହିଁ ଯୋଗାର୍ଧ ଦଶାରମ୍ଭ ବିଚାର କରିବେ ।

ଦୃଗଦଶା ବିଚାର:

## ସୂତ୍ର:-କୁମ୍ଭାଦି ତ୍ରିକୂଟ ପଦକ୍ରମେଣ ଦୃଗ୍ ଦଶା ।୨୧।

ଅର୍ଥ:---ଲଗ୍ନର ନବମାଦ (୭, ୮, ୯, ଦଶାବର୍ଷ) ଭେଦରେ ଦୃଗ୍‌ଦଶା ହୁଏ । ଏଥିରେ ପ୍ରଥମେ ନବମର ଓ ନବମ ଦୃଷ୍ଟ ରାଶିର ଦ୍ୱିତୀୟରେ ଦଶମର ଓ ଦଶମ ଦୃଷ୍ଟ ରାଶିର ଶେଷରେ

ଏକାଦିଶର ଓ ଏକାଦଶ-ଦୃଷ୍ଟ ରାଶିର ଦଶା ଭେଦ ହୁଏ । ପ୍ରତ୍ୟେକ ଦଶା ବିଚାରରେ ବିଷମ ରାଶିର କ୍ରମ ଗଣନା ଓ ସମରାଶିର ଉତ୍କ୍ରମ ଗଣନା ପ୍ରତି ଦୃଷ୍ଟି ରଖିବା ଉଚିତ ।

ତ୍ରିକୋଣ ଦଶା ଗଣନ କ୍ରମ:- -

**ସୂତ୍ର:-ମାତୃଧର୍ମୟୋଃ ସାମାନ୍ୟଂ ବିପରୀତ-**
**ମୋଜ କୂଟୟୋଃ ।୨୨।**
**ଯଥା ସାମାନ୍ୟଂ ଯୁଗ୍ମେ ।୨୩।**

ଅର୍ଥ:---ଉକ୍ତ ଚତୁର୍ଥର ବିଷମ ରାଶିର କ୍ରମଗଣନା ଓ ସମରାଶିର ଉତ୍କ୍ରମ ଗଣନା ସିଦ୍ଧହୋଇଅଛି । କିନ୍ତୁ ଚରଦଶା ତ୍ରିକୋଣଦଶା ଆନୟନରେ କେବଳ ଏତିକି ଭେଦ-ରହୁଛିଯେ, କୁମ୍ଭ ଓ ସିଂହ ବିଷମରାଶି ହେଲେ ମଧ୍ୟ ଏହାଙ୍କର ଉତ୍କ୍ରମ ଗଣନା ଓ ବୃଷ, ବୃଶ୍ଚିକ ସମରାଶି ହେଲେ ମଧ୍ୟ ଏଠାରେ କ୍ରମ ଗଣନା କରାଯିବ ।

ପ୍ରାଚୀନ କାରିକା ମଧ୍ୟ କହେ:---

"କ୍ରମୋତ୍କ୍ରମାଭ୍ୟାଂ ଗଣନୀୟଦୋଜ ଯୁଗ୍ମେଷୁ ରାଶିଷୁ
କ୍ରମାତ୍ ବୃଷେ ବୃଶ୍ଚିକେଚ ବ୍ୟୁତ୍କ୍ରମାତ୍ କୁମ୍ଭ ସିଂହୟୋଃ ।

ତ୍ରିକୋଣ ଦଶା ବିଚାର:---

**ସୂତ୍ର:-ପିତୃମାତ ଧନ ପ୍ରାଣ୍ୟାଦ୍ୱ ସ୍ତ୍ରିକୋଣେ । ୨୪ ।**
**ତଦ୍ଦ୍ୱାରବାହ୍ୟାଭ୍ୟାଂ ତଦ୍ବତ୍ । ୨୫ ।**

ଅର୍ଥ:---ଲଗ୍ନ, ପଞ୍ଚମ ଓ ନବମ ମଧ୍ୟରେ ଯେ ବଳବାନ୍ ତାହାଠାରୁ ତ୍ରିକୋଣ ଦଶା ଆରମ୍ଭ ହୁଏ । ଚରଦଶା ପଦ୍ଧତି ଏହାର ମଧ୍ୟ ଦଶାବର୍ଷ ନିରୂପଣ କରାଯିବ । ଏହି ଦଶାରେ ଦ୍ୱାର ବାହ୍ୟ ରାଶିପରି ଫଳ ବିଚାର କରାଯିବ । ଏହି ଦଶା ପାପ ଯୁକ୍ତାଦି ହେଲେ:---

"ପାପ ଦ୍ରେକାଣେ ପାପାଢ୍ୟେ ଦେହ ପୀଡ଼ା ମନୋବ୍ୟଥା
ନୃପାତ୍ ଭୀତି ଭୟଂ କ୍ଲେଶ ମହାରୁଗ୍ଭ୍ୟାଂ ପ୍ରପୀଡ଼ିତଃ ।"

ଉକ୍ତ ଫଳ ଭୋଗହୁଏ ।

**ସୂତ୍ର:-ଧାସ ଦୈରକତ୍ ପତ୍ନିକାରତ୍**
**କାରକୈଃଫଳାଦେଶଃ । ୨୬ ।**

ଅର୍ଥ:---ନିଜ ନିଜ କାରକର ସପ୍ତମ, ତୃତୀୟ, ଲଗ୍ନ ଓ ନବମାଦିରୁ ସ୍ତ୍ରୀ, ଭ୍ରାତା, ଶରୀର ଓ ଧର୍ମାଦି ବିଚାର କରାଯିବ ।

## ଭାବ ଦଶା ବିଚାର:- -

**ସୂତ୍ର:-ତାର୍କାଂଶେ ମନ୍ଦାଦେଧ୍ୟା ବଶେଶଃ । ୨୭ ।**
**ତସ୍ମିନ୍ନୁଚ୍ଚେ ନୀଚେ ବା ଶ୍ରୀମନ୍ତଃ । ୨୮ ।**
**ସ୍ୱମିତ୍ରଭେ କଞ୍ଜତ୍ । ୨୯ ।**
**ଦୁର୍ଗତୋଽ ପରଥା । ୩୦ ।**

## ଦ୍ରେହିପର୍ ମଧ୍ୟ:

ଜନ୍ମଭେର୍ ଦ୍ୱାଦଶାଂଶା ବିଭକ୍ତେ ଯତ୍ର ଚନ୍ଦ୍ରମା
ଲଗ୍ନାତ୍ ତତତଥୈ ନଶୈାତ୍ୟସେ ଦାଦ୍ୟଦଶ ଧ୍ରୁବମ୍ ।
ସ ଋଜୁ୍ୟେଛେ ଓଥା ନୀଚେ ତଦାଦ୍ୟା ଦ୍ୱାଜସେବକଃ
ସ୍ୱ ମିତ୍ରର୍କ୍ଷେ ସୁଖୀ ଶତ୍ରୁ ନୀଚେଶୌକାଃସ୍ୱଃ ସବେ ସମ୍ଃ ।

ଅର୍ଥ:---ଜନ୍ମଚନ୍ଦ୍ର ନକ୍ଷତ୍ରର ଦ୍ୱାଦଶ ଭାଗକୁ ବିଷମ ସମ ଭେଦରେ କ୍ରମୋତ୍କ୍ରମ ଗଣନାନୁସାରେ ତାଦ୍ଦଶା ସ୍ଥିର ହୁଏ । "ଅହୋ" "ଦ୍ରେଷ୍କାଣରେ" ପ୍ରଥମ ଦ୍ୱାଦଶାଂଶରେ ଥିଲେ ଲଗ୍ନାଦ, ଦ୍ୱିତୀୟ ଦ୍ୱାଦଶାଂଶରେ ଥିଲେ ଦ୍ୱିତୀୟାଦିରୁ ଆରମ୍ଭ ହୁଏ । ଯେଉଁ ରାଶିରୁ ଏହି ଦଶା ଆରମ୍ଭ ହେବ ତାହାକୁ ତାତ୍କାଲିକ ଲଗ୍ନ ବୋଲି ବୁଝିବ, ସେଥିରେ ଉଚ୍ଚ ବା ନୀଚ ଗ୍ରହଥିଲେ ମନୁଷ୍ୟ ଶ୍ରୀମାନ୍ ବା ରାଜସେବକ ହୁଏ । ମିତ୍ର ଗ୍ରହ ଯୁକ୍ତ ହେଲେ ସାଧାରଣ ସୁଖୀ ହୁଏ । ଶତ୍ରୁ ଗ୍ରହ ଯୁକ୍ତହେଲେ ଦରିଦ୍ର ହୁଏ । (ଏହି ଦଶାରେ ମଧ୍ୟ ୯ ବର୍ଷ ଲେଖେ ପ୍ରତ୍ୟେକ ଦଶା ଭୋଗହୁଏ । )

**ସୂତ୍ର:-ସ୍ୱବୈଷମ୍ୟେ ଯଥାସ୍ୱଂ କ୍ରମବ୍ୟୁତ୍କ୍ରମୌ ।୩୧।**

**ସାମ୍ୟେ ବିପରୀତମ୍ । ୩୨ ।**

**ଶନୌ ଚେତ୍ୟେକେ । ୩୩ ।**

**ଅନ୍ତର୍ଭୁକ୍ତ୍ୟଂଶଯ୍ୟୋରେତତ୍ । ୩୪ ।**

ଅର୍ଥ:---ଅମାତ୍ୟକାରକ କେନ୍ଦ୍ର ପଦରେ ଥିଲେ ପଞ୍ଚମ ରାଶିଠାରୁ କ୍ରମ ଗଣନା ଯମରାଶିରେ ଥିଲେ ଉତ୍କ୍ରମ ଗଣନା କରି ଅନ୍ତର, ଛିଦ୍ରାନ୍ତର ଦଶା ଲେଖାଯିବ। ଏହିପରି ମନପଦସ୍ଥ କାରକର ଯମରାଶିରେ କ୍ରମ ବା ଯମରାଶିରେ ଉତ୍କ୍ରମ ଗଣନା କରାଯାଏ। ଶନି ଥିଲେ ସ୍ଥିରେ ମଧ୍ୟ ଏହିପରି ବିଚାର କରାଯିବ ବୋଲି କେହି କେହି ଆଚାର୍ଯ୍ୟ କହନ୍ତି।

**ସୂତ୍ର:—ଶୁଭଦଶା ଶୁଭଯୁକ୍ତେ ଧାମ୍‌ନ୍ୟେଛେବା । ୩୫ ।**

**ଅନ୍ୟଥାଽନ୍ୟଥା । ୩୬ ।**

**ସିଦ୍ଧ ମନ୍ୟତ୍ର । ୩୭ ।**

ଅର୍ଥ:---ଶୁଭଯୁକ୍ତ ବା ଉଚ୍ଚ ଗ୍ରହଯୁକ୍ତ ରାଶିଦଶା ବିଶେଷ ଶୁଭଦାୟକ ହୋଇଥାଏ। ଶତ୍ରୁ ଓ ପାପାଦି ଗ୍ରହଯୁକ୍ତ ରାଶିଦଶା ଅନିଷ୍ଟ ଫଳ ଦାତା ହୁଏ। ବିଶେଷ ଫଳାଫଳ ବିଷୟ ନେଇ ଅନ୍ୟ ଶାସ୍ତ୍ରରେ ବିଚାର କରିବେ।

—※—

# ଉଦାହରଣ ଦୀପିକା

## ଫଳଭାଗ ଓ ଚରଖଣ୍ଡ ବିଚାର:---

"ମେଷାଦିତେଗ ସାୟନ ଭାଗ ସ୍ଫୁଟେଷୁ ଦିନାର୍ଦ୍ଧଭାଯା ଫଳଭାଭବେତ୍ର ସା,ଚ ସ୍ଥା ହତାଧୁ ର୍ଦଶଭିର୍ଭୁଜଙ୍ଗୈ ର୍ଦିଗ୍‌ଭିଷ୍ଟରାର୍ଦ୍ଧାକ୍ଲାତ ଚେଟୋଦ୍‌--ଧୃତାନ୍ତ୍ୟା।"

ଅର୍ଥାତ୍-- ଯେଉଁ ଦିନ ସାୟନ ସୂର୍ଯ୍ୟ ମେଷରାଶିର ଆଦ୍ୟବିନ୍ଦୁରେ ପ୍ରବେଶ କରେ ସେହିଦିନର ମଧ୍ୟାହ୍ନ କାଳିକ ଛାୟାକୁ 'ପଳଭା' କୁହାଯାଏ ।

ପଳଭାକୁ ତିନି ସ୍ଥାନରେ ରଖି କ୍ରମରେ ୧୦, ୮, ୧୦ରେ ଗୁଣିବ । ତୃତୀୟସ୍ଥ ଗୁଣନ ଫଳକୁ ୩ରେ ଭାଗ ଦେଲେ ଚରଖଣ୍ଡ ହେବ । ଯଥା—ବ୍ରହ୍ମପୁର ୪ । ୧୧

(୪ । ୧୧) × ୧୦ = ୫୧ , ( ୪ ୧୧ ) × ୮ = ୩୩

(୪ । ୧୧) × ୧୦ = ୪୧ ÷ ୩ = ୩.୯

ଚରଖଣ୍ଡ ହେଲା ୫୧ । ୩୩ । ୧୩ ଏହିପରି ଅନ୍ୟାନ୍ୟ ସ୍ଥାନ ମାନଙ୍କର ଚରଖଣ୍ଡ ସାଧନ କରାଯାଇ ପାରିବ ।

ଲଙ୍କୋଦୟରୁ ସ୍ୱଦେଶର ଉଦୟ ଲଗ୍ନ ଆନୟନ:

ଲଙ୍କୋଦୟା ବିଘଟିକା ଗଜଭାନି ଗୋଙ୍କ-
ଦସ୍ରା ସ୍ତ୍ରିପକ୍ଷ ଦହନାଃ କ୍ରମଗୋତ୍କ୍ରମସ୍ଥାଃ ।
ହୀନାନ୍ୱିତା ଚରଦଳୈଃ କ୍ରମଗୋତ୍କ୍ରମସ୍ଥୈଃ
ମେଷାଦିତୋ ଘଟତ ଉତ୍କ୍ରମତ ସ୍ତ୍ୱିମେସ୍ୟୁଃ ।

ଅର୍ଥାତ୍:---୨୭୮, ୨୯୯, ୩୨୩ ଲିପ୍ତା କ୍ରମରେ ମେଷାଦି ତିନି-ରାଶିର, ଉତ୍କ୍ରମରେ ( ବିପରୀତରେ ) କର୍କଟାଦି ତିନି-ରାଶିର ଲଙ୍କୋଦୟ ମାନଅଟେ । ମେଷାଦି ତିନିରାଶିର ଉଦୟରେ ଚରପଳକୁ କ୍ରମରେ ଫେଡି, କର୍କଟାଦି ତିନି ରାଶିର ଉଦୟରେ ଉତ୍କ୍ରମରେ ଚରଫଳକୁ ମିଶାଇଲେ ମେଷଠୁଁ କନ୍ୟା ପର୍ଯ୍ୟନ୍ତ ସ୍ୱଦେଶ-ଉଦୟ ମାନ ବାହାର

ଆସିବ । ସେହିପରି କ୍ରମଉତ୍କ୍ରମରେ ତୁଳାଠାରୁ ମୀନ ପର୍ଯ୍ୟନ୍ତ ଉଦୟମାନ ତାହାର ହେବ ।

| ଲଙ୍କୋଦୟ, | ଚରଖଣ୍ଡ, | | ସ୍ୱଦେଶୀୟ ଉଦୟମାନ, | |
|---|---|---|---|---|
| ମେଷ | ୨୭୮---୪୬ = ୨୩୨ | = ୩ \| ୫୨ | ମୀନ | |
| ବୃଷ | ୨୯୯---୩୭ = ୨୬୨ | = ୪ \| ୨୨ | କୁମ୍ଭ | |
| ମିଥୁନ | ୩୨୩---୧୩ = ୩୧୦ | = ୫ \| ୧୦ | ମକର | |
| କର୍କଟ | ୩୨୩ + ୧୩ = ୩୩୬ | = ୫ \| ୩୬ | ଧନୁ | |
| ସିଂହ | ୨୯୯ + ୩୭ = ୩୩୬ | = ୫ \| ୩୬ | ବୃଶ୍ଚିକ | |
| କନ୍ୟା | ୨୭୮ + ୪୬ = ୩୨୪ | = ୫ \| ୨୪ | ତୁଳା | |

ଏହି ପ୍ରକାରେ ସବୁସ୍ଥାନର ନିରୟନ ଲଗ୍ନ ମାନ ସାଧନ କରାଯାଇ ପାରିବ ।

## ଅଭୀଷ୍ଟ ଦିନର ଅୟନାଂଶ ନୟନ :—

ଅର୍କୋ ଲବା କୃତ ସ୍ତିଥ୍ୟୋ ନଗାପ୍ତୋ ବକଳାମତାଃ
ତାବର୍ଷା ଦ୍ୟୟନାଂ ଶୌଦ୍ଧ ଯୁକ୍ତା ଇଷ୍ଟଦିନେ ସ୍ପୃତାଃ ।

ଇଷ୍ଟ ଦିନର ରବି ସ୍ଫୁଟ ଅଂଶାଦିକୁ ୩ରେ ଗୁଣି ୨୦ରେ ଭାଗ ଦେଲେ ବକଳାଦି ଆସିବ । ଏହାକୁ ବର୍ଷାରମ୍ଭର ଅୟନାଂଶରେ ମିଶାଇଲେ ଅଭୀଷ୍ଟ ଦିନର ଅୟନାଂଶ ହେବ ।

## ଲଗ୍ନ ବିଚାର:—

"ଏ ବୃତ୍ତଂ ପ୍ରାକ୍ କୁଜେଯତ୍ର ଲଗ୍ନଂ ଲଗ୍ନଂ ତଦୁଚ୍ୟତେ ।"

ପୂର୍ବ କ୍ଷିତିଜରେ କ୍ରାନ୍ତିବୃତ୍ତର ଉଦୟକୁ ଲଗ୍ନ କୁହାଯାଏ ।

ଅର୍ଥାତ୍:— ଯେଉଁ ସମୟରେ କ୍ରାନ୍ତି ବୃତ୍ତରେ ଯେଉଁ ରାଶିର ଯେତେ ଅଂଶ ପୂର୍ବ କ୍ଷିତିଜରେ ଉଦିତ ହେବା ଦେଖାଯାଏ ତାହାକୁ ଲଗ୍ନ ବୋଲି କହନ୍ତି । ପୂର୍ବ କ୍ଷିତିଜରେ ରାଶିର ଯେତିକି ଅଂଶରେ ଉଦୟ ହୁଏ ତାର ସପ୍ତମ ରାଶିର ସେତିକି ଅଂଶରେ ପଶ୍ଚିମ କ୍ଷିତିଜରେ ଅସ୍ତ ହୋଇଥାଏ । ଏବଂ ସେହି ସମୟରେ ଯାମ୍ୟୋତ୍ତରବୃତ୍ତରେ ଯେଉଁ ରାଶି ସଂଲଗ୍ନ ହୁଏ, ତାହାକୁ ମଧ୍ୟ ଲଗ୍ନ ବା ଦଶମଲଗ୍ନ କହନ୍ତି । ପ୍ରତ୍ୟେକ ଅହୋରାତ୍ର ମଧ୍ୟରେ ଦ୍ୱାଦଶଟି ଯାକ ରାଶି କ୍ରମଶଃ ପୂର୍ବ କ୍ଷିତିଜରେ ସଂଲଗ୍ନ ହୁଅନ୍ତି । ରାଶିର ଆଦ୍ୟ ବିନ୍ଦୁରୁ ଅନ୍ତ୍ୟ ବିନ୍ଦୁ ପର୍ଯ୍ୟନ୍ତ ଯେତେ ସମୟ କ୍ଷିତିଜରେ ସଂଲଗ୍ନ ହୁଏ, ତାହାକୁ ଲଗ୍ନମାନ କହନ୍ତି । ସବୁ ଦେଶରେ ଅକ୍ଷାଂଶ ସମାନ ନ ଥିବା ଯୋଗୁଁ ଦ୍ୱାଦଶଟି ଯାକ ରାଶିର ଉଦୟ ସବୁ ଦେଶରେ ସମାନ ଭାବେ ଦେଖା ଯାଏ-ନାହିଁ । ସୁତରାଂ ପ୍ରତ୍ୟେକ ସ୍ଥାନରେ ଲଗ୍ନମାନର ତାରତମ୍ୟ ହୋଇଥାଏ ।

## ଲଗ୍ନସାଧନଃ—

---

ତତ୍କାଲେ ସାୟନାର୍କସ୍ୟ ଭୁକ୍ତ ଭୋଗ୍ୟାଂଶ ସଂଗୁଣାତ୍
ସ୍ୱୋଦୟାଦ୍ ଖାଗ୍ନି ଲବ୍ଧଂ ଯଦ୍ଭୁକ୍ତଂ ଭୋଗ୍ୟଂ ରବେସ୍ତ୍ୟଜେତ୍
ଇଷ୍ଟନାଡୀ ପଲେଭ୍ୟସ୍ତୁ ଗତଗମ୍ୟା ନିଜୋଦୟାତ୍
ଶେଷଂ ଖାଗ୍ନ୍ୟାହତଂ ଭକ୍ତମଶୁଦ୍ଧେନ ଲବାଦିକମ୍
ଅଶୁଦ୍ଧ ଶୁଦ୍ଧେ ହୀନଯୁକ୍ତନୁ ବ୍ୟୟନାଂଶକମ୍

ଅର୍ଥାତ୍:—ଇଷ୍ଟ ସମୟରେ ତାତ୍କାଳିକ ସାୟନ ରବିର ଭୁକ୍ତ ବା ଭୋଗ୍ୟାଂଶସ୍ବକୁ ଦେଶୀୟ ନିରୟନ ଲଗ୍ନମାନ ସହ ଗୁଣନ କରି ପରେ ୩୦ ରେ ହରି ସେହି ହରଣର ଲବ୍ଧ ଲିତାଦିକୁ ଇଷ୍ଟ ସମୟରୁ ଫେଡ଼ି,ସେଥିରେ ତାର (ସାୟନରବି ଯେଉଁ ରାଶିରେଥିବ ତାର ) ପର ବା ପୂର୍ବ ( ଭୁକ୍ତାନୁସାରେ ସାଧନ କରୁଥିଲେ ପର ରାଶି ଭୋଗ୍ୟାନୁସାରେ ପୂର୍ବ ରାଶି ) ରାଶିମାନ ଫେଡ ପୁଣି ୩୦ରେ ଗୁଣନ କରି ଅଶୁଦ୍ଧ ରାଶିର ଉଦୟ ମାନରେ ଭାଗ ଦେବେ । ଭୁକ୍ତ ପ୍ରକାରେ ସାଧନ କରୁଥିଲେ ଅଶୁଦ୍ଧ ରାଶି ସଂଖ୍ୟାରୁ ଏହି ଲବ୍ଧିକୁ ଫେଡ଼ିବେ, ଭୋଗ୍ୟ ପ୍ରକାରେ କରୁଥିଲେ ଶୁଦ୍ଧ ରାଶି ସଂଖ୍ୟା (ଫେଡ଼ା ଯାଇ-ଥିବା ରାଶି ସଂଖ୍ୟା) ସେହି ଲବ୍ଧିରେ ମିଶାଇ ଅୟନାଂଶ ବାଦ ଦେଲେ ପ୍ରକୃତ ଲଗ୍ନସ୍ଫୁଟ ହେବ । ଯଥା:--ଶକାବ୍ଦ ୧୮୪୬ ବୃଷ ୯୮ ଦିନ ଶନିବାର ରାତ୍ର ଦ ୨୦ । ୬ରେ କୌଣସି ଜାତକରେ ଜନ୍ମ । ସୂର୍ଯ୍ୟୋଦୟାଦି ଇଷ୍ଟ ଦ-୫୨ । ୫୬

ତାତ୍କାଳିକ ଗ୍ରହସ୍ଫୁଟ

| | | | | |
|---|---|---|---|---|
| ରବି | ୧ | ୧୭ | ୯ | ୪୬ |
| ଚନ୍ଦ୍ର | ୦ | ୨୮ | ୧୨ | ୩୫ |
| ମଙ୍ଗଳ | ୯ | ୨୬ | ୨୩ | ୩୩ |
| ବୁଧ | ୦ | ୨୧ | ୫୪ | ୫୦ |
| ବୃହସ୍ପତି | ୭ | ୨୩ | ୩ | ୩୬ |

| | | | | |
|---|---|---|---|---|
| ଶୁକ୍ର | ୨ | ୨୩ | ୧୪ | ୧ |
| ଶନି | ୬ | ୩ | ୧୮ | ୪୫ |
| ରାହୁ | ୪ | ୪ | ୨ | ୪୩ |
| କେତୁ | ୧୦ | ୪ | ୨ | ୪୩ |

ରବି ର ୧ | ୧୭ | ୯ | ୪୬ ରାଶି କଳା ହୋଇଥିବାରୁ ୬ ରାଶି ମିଶାଇ ଦିଆଗଲା ୭ | ୧୭ | ୯ | ୪୬ ଏଥିରେ ଅୟନାଂଶ ୨୨ | ୫୪ | ୪୮ ମିଶାଇ ବାରୁ ୮ | ୧୦ | ୪ | ୩୪ | ହେଲା, ଏହାର ଅଂଶାଦିକୁ ୩୦ ରୁ ଫେଡ଼ିବାରୁ ୧୯ | ୫୫ | ୨୬ ଧନୁରୁ ଭୋଗ କରିବାକୁ ବାକି ଅଛି ବୋଲି ଜଣାଗଲା | ଧନୁର ଉଦୟ ମାନ ୩୩୬ରେ ଏହି ଭୋଗ୍ୟାଂଶକୁ ଗୁଣିବାରୁ (୧୯ | ୫୫ | ୨୬ × ୩୩୬ = ୬୩୮୪ | ୧୮୪୮୦ | ୮୭୩୬ ଦକ୍ଷିଣସ୍ଥ ଅଙ୍କମାନଙ୍କୁ ୬୦ ରେ ହର ଭାଗଶେଷକୁ ଯଥା ସ୍ଥାନରେ ରଖି ଲବ୍ଧିକୁ ବାମ ଅଙ୍କରେ ମିଶାଯାଇଛି |) ୬୬୯୪ | ୨୫ | ୩୦ ହେଲା ଏହାକୁ ୩୦ରେ ହରିବାରୁ ଲବ୍ଧି ୨୨୩ | ୮ | ୫୧ ପଡ଼ିଲା | ରବି ଦ୨୦ | ୬ ବା ୧୨୦୬ ରୁ ଲବ୍ଧିକୁ ଫେଡିବାରୁ ୯୮୨ | ୫୧ | ୯ ଏଥିରୁ ଧନୁର ଅଗ୍ରିମ ରାଶି-ମାନ ଫେଡିବାରୁ ( ମ. ୩୧୦ + କୁ ୨୬୬ + ମୀ ୨୩୭ = ୮୧୩),(୯୮୨ | ୫୧ | ୯)—(୮୧୩) = ୧୬୯ | ୫୧ | ୯ ବାକି ରହିଲା | ଅଶୁଦ୍ଧ ହେଲା ମେଷ | ପୁଣି ଏହାକୁ ୩୦ରେ ଗୁଣିବାରୁ (୧୬୯ | ୫୧ | ୯ × ୩୦) = ୫୦୯୫ | ୩୪ | ୩୦ ହେଲା, ଏହିରେ ଅଶୁଦ୍ଧ ରାଶି ମେଷର

ଉଦୟ ମାନରେ ଭାଗ ଦେବାରୁ (୫୦୯୫।୩୪।୩୦ ÷ ୨୫୭ =) ଅଂଶ ଦି ୨୧।୩୧।୧୭ ଲବ୍ଧି ହେଲ। ଏଥି-ରେ ଶୁକ୍ଲରାଶି ସଂଖ୍ୟା ୧୨ ମିଶାଇବାରୁ, ରା ୧୨।୨୧।୩୧।୧୭ ହେଲ ଏଥିରୁ ଅୟନାଂଶ ଫେଡ଼ିବାରୁ ରା ୧୧।୨୮।୩୭।୨୯ ଏହା କେବଳ ବିଶୁଦ୍ଧ ଲଗ୍ନ ସ୍ପଷ୍ଟ ହେଲ।

ସେହିପରି ଭୁକ୍ତ ପ୍ରକାରେ:

ଶତ ରାଶି ଯୁକ୍ତ ସାୟନ ରବିର ଭୁକ୍ତାଂଶ ୮।୧୦।୪।୩୪କୁ ଧନୁର ଉଦୟ ମାନରେ ଗୁଣିବାରୁ (ଅଂ ୧୦।୪।୩୪ × ୩୩୬ =) ୩୩୮୫।୩୫।୨୪ ହେଲ। ଏହାକୁ ୩୦ ରେ ହରଣ କରିବାରୁ ଲବ୍ଧି ୧୧୨।୫୧।୯ ପଡ଼ିଲ। (ଏଠାରେ ଏହା ଠିକ୍ ଅଛି କି ନାହିଁ ଜାଣିବାକୁ ହେଲେ ଭୋଗ୍ୟାଂଶରେ ସେହି ଲବ୍ଧି ସହ ଏହି ଲବ୍ଧିକୁ ମିଶାଇଲେ ମିଶାଣ ଫଳ ଯଦି ସ୍ପଷ୍ଟ ରାଶିର ଉଦୟ ମାନ ସଙ୍ଗେ ସମାନ ହୁଏ ତେବେ ତାହା ଠିକ୍ ଅଛି ବୋଲି ବୁଝିବ। ଏଠାରେ ଭୋଗ୍ୟାଂଶ ଲବ୍ଧି (୨୨୩।୮।୫୧)+(ଭୁକ୍ତାଂଶ ଲବ୍ଧି ୧୧୨।୫୧।୯)=୩୩୬ ଧନୁର ଉଦୟମାନ ସହ ସମାନ ଅଛି) ସୂର୍ଯ୍ୟୋଦୟ ପରେ ଜନ୍ମ ହୋଇ ଥିବାରୁ ୬୦ ରୁ ଗର୍ଭ ଦଣ୍ଡ ୨୦।୬କୁ ବାଦ ଦେବାରୁ ଦ ୩୯।୫୪।ବା ୨୩୯୪। ଏଥିରୁ ଭୁକ୍ତ ଲବ୍ଧିକୁ ଫେଡ଼ିବାରୁ (୨୩୯୪—୧୧୨।୫୧।୯ =) ୨୨୮୧।୮।୫୧ ହେଲ। ଏଥିରୁ ଏହାର ପୂର୍ବ ରାଶି ବୃଶ୍ଚିକ

ହିସାବରେ ଫେଡିବାରୁ ( ବିଛାରୁ ବୃଷପର୍ଯ୍ୟନ୍ତ ବର୍ତ୍ତମାନ ) ୬୭।୮।୫୨ ( ଭୁକ୍ତ ଭୋଗ୍ୟ ଉଭୟ ପ୍ରକାର ଅଶୁଦ୍ଧ ରାଶି ଏକେ ହେବାରୁ ଏହା ଠିକ୍ ଅଛି । ) ୩୦ ରେ ଗୁଣିବାରୁ ( ୬୭।୮।୫୧ × ୩୦ ) ୨୦୧୦।୨୫।୩୦ ହେଲା । ଏହାକୁ ଅଶୁଦ୍ଧ ମେଷ ଉଦୟ ମାନରେ ହରଣ କରିବାରୁ ଲବ୍ଧି ୮।୨୮।୪୩ ଏହାକୁ ଅଶୁଦ୍ଧ ରାଶି ସଂଖ୍ୟାରୁ ଫେଡି-ବାରୁ ( ଏଠାରେ ମେଷ ଅଶୁଦ୍ଧ ମେଷର ସଂଖ୍ୟା ୧ ଅର୍ଥାତ୍ ରା୧।୩-୮।୨୮।୪୩) = ରା ୧।୨।୨୧।୬୧।୧୭ ହେଲା ଏଥିରୁ ଅୟନାଂଶ ଫେଡ଼ିବାରୁ ରା ୧୦।୨୮।୩୬।୨୯ ପୂର୍ବ ଲଗ୍ନସ୍ଫୁଟ ସଙ୍ଗେ ସମାନ ହେଲା ।

## ଜନ୍ମ କୁଣ୍ଡଳୀ :-



ଦଶମ ଲଗ୍ନସାଧନ ପାଇଁ ନତକାଳ ବିଚାରଃ—

ପୂର୍ବଂ ନତଂସ୍ୟାଦିନରାତ୍ରି ଖଣ୍ଡଂ

ଦତ୍ତ୍ୱା ନିଶୋତ୍ତ୍ୱେଷ୍ଟ ଘଟୀବିହୀନମ୍ ।

ଦତ୍ତ୍ୱା ନିଶୋତ୍ତ୍ୱେଷ୍ଟଘଟୀଷୁ ଶୁଦ୍ଧଂ

ଦ୍ୟୁରାତ୍ରଖଣ୍ଡଂ ତ୍ୱପରଂ ନତଂସ୍ୟାତ୍ ।

ଦିନାର୍ଦ୍ଧରୁ ଯଦି ଦିନ ଗତଘଡ଼ୀ ( ଇଷ୍ଟକାଳ ) ଫେଡ଼ହୁଏ ତେବେ ତାହାକୁ ଦିନର ପୂର୍ବନତ କୁହାଯିବ । ରାତ୍ର୍ୟର୍ଦ୍ଧରେ ଇଷ୍ଟ ରାତ୍ରି ଦଣ୍ଡ ଫେଡ଼ ହୋଇ ପାରିବ ତେବେ ସେହି ଫେଡ଼ାଣ ଫଳକୁ ରାତ୍ରିର ପୂର୍ବନତ କୁହାଯିବ । ଦିନର ଗତଘଟୀରେ ( ଇଷ୍ଟ-କାଳରେ ) ଯଦି ଦିନାର୍ଦ୍ଧ ଫେଡ଼ ହୁଏ ତେବେ ସେହି ଫଳ ହେବ ଦିନର ପରନତ । ରାତ୍ରି ଘଟୀରେ ରାତ୍ର୍ୟର୍ଦ୍ଧ ଫେଡ଼ଲେ ତାକୁ ରାତ୍ରିର ପରନତ କୁହାଯିବ ।

ଉଃ—ରାତ୍ରି ( ଦ୨୦।୬ )—ରାତ୍ର୍ୟର୍ଦ୍ଧ ( ଦ୧୩।୩୫ ) ଦ୬।୩୧

ଏହା ହେଲା ରାତ୍ରିର ପରନତ ।

ଦଶମ ଲଗ୍ନ ସାଧନଃ—

"ଏବଂ ଲଙ୍କୋଦୟୈର୍ଭୁକ୍ତଂ ଭୋଗ୍ୟଂ ଶୋଧ୍ୟ ପଳୀକୃତାତ୍

ପୂର୍ବ ପଶ୍ଚାନ୍ନତାଦନ୍ୟତ୍ ପ୍ରାଗ୍-ବତ୍-ତଦ୍ଦଶମଂଭବେତ୍ ।

ଯେପରି ପ୍ରଥମ ଲଗ୍ନ ସାଧନ କରାଗଲା ସେହିପରି ଏଠାରେ ଲଙ୍କୋ-ଦୟମାନଙ୍କୁ ଧରି ଏବଂ ଇଷ୍ଟ ଘଟୀ ପରିବର୍ତ୍ତେ ନତଘଟୀକୁ ଧରି ଦଶମ ଲଗ୍ନ ସାଧନ କରାଯିବ । ପୂର୍ବନତ ହେଲେ ଉକ୍ତ ପ୍ରକାରେ

ଏବଂ ପରନତ ହେଲେ ଭୋଗ୍ୟ ପ୍ରକାରେ ସାଧନ କରିବେ । ପୂର୍ବୋକ୍ତ ସାଧନ ଷଡ୍‌ଭରବ ୯।୮।୧୦।୪।୩୪ ଏହାର ଭୋଗ୍ୟାଂଶ ୧୯।୫୫।୨୬ ପରନତ ହେତୁ ଭୋଗ୍ୟାଂଶକୁ ଧରି ସାଧନ କରା-ଯିବ । ଏହି ଭୋଗ୍ୟାଂଶରେ ଧନୁରାଶିର ଲଙ୍କୋଦୟ ମାନ ଗୁଣି-ବାରୁ ( ୧୯।୫୫।୨୬ + ୩୨୩ = ) ୬୪୩୫।୨୪।୫୮ ଏହାକୁ ୩୦ରେ ହରିବାରୁ ଲବ୍ଧ ୨୧୪।୩୦।୪୯ ପରନତ ୬୬।୩୧ ବା ୩୯୧ରୁ ସେହି ଲବ୍ଧିକୁ ଫେଡିବାରୁ ୧୭୬।୨୬।୧୧ ଧନୁର ପରରାଶିମାନ ଏଥିରୁ ଫେଡି ନହେବାରୁ ମକର ଅଶୁଦ୍ଧ ହେଲା । ଏହାକୁ ( ୧୭୬।୨୬।୧୧ ) ୩୦ରେ ଗୁଣିବାରୁ ୫୨୯୫।୩୫।୩୦ ହେଲା । ମକରର ଲଙ୍କୋଦୟ ମାନଦ୍ୱାରା ହରଣ କରିବାରୁ ( ୫୨୯୪ ୩୫।୩୦ ÷ ୩୨୩ = ) ଲବ୍ଧିଅଂଶାଦି ୧୬।୨୩।୩୦ ଏଥିରେ ଶୁଦ୍ଧ ଧନୁରାଶି ସଂଖ୍ୟା ଯୋଗ କରିବାରୁ ରା ୯।୧୬।୨୩।୩୦ ଏଥିରୁ ଅୟନାଂଶ ଫେଡ଼ିବାରୁ ଦଶମ ଲଗ୍ନସ୍ଫୁଟ ହେଲା ରା ୮।୨୩।୨୮।୫୨ ।

ବିଶେଷତ୍ୱ:—

ଭୁକ୍ତଂ ଭୋଗ୍ୟଂ ହେୟଷ୍ଟ କାଲାନ୍ ଶୁଦ୍ଧେତ୍ ନିଂଶଜ୍ଜାତ୍—
ସ୍ୱୋଦୟାହୃତଂ ଲବାଦ୍ୟ ମ୍
ହୀନଂଯୁକ୍ତଂ ଭାସ୍କରେତତ୍ତ୍ୱନୁଃସ୍ୟାତ୍ ତୈର୍ଲଗ୍ନଂ ଭର୍ଦ୍ଧଯୁକ୍ତା-
ଦବେସ୍ତୁ ।

ପ୍ରଥମଲଗ୍ନ ବା ଦଶମଲଗ୍ନ ସାଧନ ସମ୍ବନ୍ଧରେ ଇଷ୍ଟଦଣ୍ଡ ବା ନତକାଳରୁ ସାୟନ ରବିର ଭୁକ୍ତ ବା ଭୋଗ୍ୟ ପଳାଦ ଫେଡି ନ ହେଲେ ଇଷ୍ଟଦଣ୍ଡ ବା ନତକାଳକୁ ୬୦ ରେ ଗୁଣି ଗୁଣନ ଫଳକୁ ସାୟନ ରବିର ସ୍ୱଉଦୟ ମାନରେ ବା ନିରକ୍ଷୋଦୟ ( ଲଙ୍କୋ-ଦୟ ) ମାନରେ ଭାଗଦେବ । ଭୋଗ୍ୟ ପ୍ରକାରେ ସାଧନକରୁଥିଲେ

ଲବ୍‌ଧିକୁ ସାୟନ ସୂର୍ଯ୍ୟରେ ମିଶାଇବ, ଉକ୍ତ ପ୍ରକାରେ ସାଧନ କରୁଥିଲେ ଲବ୍‌ଧିକୁ ସାୟନ ସୂର୍ଯ୍ୟରୁ ଫେଡ଼ ଅୟନାଂଶ ସେଥିରୁ ଫେଡ଼ିଲେ ଲଗ୍ନ ସ୍ଫୁଟ ବା ଦଶମ ସ୍ଫୁଟ ହେବ । ରାତିରେ ଲଗ୍ନ ସାଧନ କଲେ ରବି ସ୍ଫୁଟରେ ୬ ରାଶି ମିଶାଇ ସାଧନ କରିବ ।

ସନ୍ଧିସହ ଅନ୍ୟାନ୍ୟ ଭାବ ସାଧନ:---

ଷଡ଼ଭେ ଲଗ୍ନଖେ ଜାୟା ତୁର୍ଯ୍ୟୌ ଲଗ୍ନୋନତୁର୍ଯ୍ୟତଃ ।
ଷଷ୍ଠାଂଶଯୁକ୍‌ତନୁଃସନ୍ଧିରଗ୍ରେ ଷଷ୍ଠାଂଶଯୋଜନାତ୍ ।
ସନ୍ଧିଃ ସମ୍ବନ୍ଧୟୋର୍ଭାବା ଷଷ୍ଠାଂଶୋନୈକଯୁକ ସୁଖାତ୍ ।
ଅଗ୍ରେସନ୍ଧିଃ ଷଡ଼େବଂ ତେ ଭର୍ଦ୍ଧଯୁକ୍ତାଃପରେଽପିଷଟ୍ ।
ଖେଟେ ଭାବ ସମେ ପୂର୍ଣ୍ଣଂ ଫଳଂ ସନ୍ଧି ସମେତ୍ଵଖମ୍ ।

ଷଡ଼୍‌ରାଶି ଯୁକ୍ତ ପ୍ରଥମ ଲଗ୍ନକୁ ସପ୍ତମ ଲଗ୍ନକୁହାଯାଏ । ସେହିପରି ଦଶମ ଲଗ୍ନରେ ଛ-ରାଶି ମିଶାଇଲେ ଚତୁର୍ଥ ଲଗ୍ନହୁଏ । ଚତୁର୍ଥ ଲଗ୍ନରୁ ପ୍ରଥମ ଲଗ୍ନକୁ ଫେଡ଼ି ସେହି ଫେଡାଂଶ ଫଳର ଷଷ୍ଠାଂଶକୁ ଲଗ୍ନାଦରେ ମିଶାଇ ଆଣିଲେ ଲଗ୍ନ, ଲଗ୍ନସନ୍ଧି ଦ୍ୱିତୀୟ ଭାବ ଆଦି କ୍ରମରେ ଚତୁର୍ଥ ଭାବପର୍ଯ୍ୟନ୍ତ ଭାବସ୍ଫୁଟ ବାହାରିବ । ଏହାପରେ ଏହି ଷଷ୍ଠାଂଶକୁ ୩୦ ଅଂଶରୁ ଫେଡ଼ି,ତାହାକୁ (ଫେଡାଣ-ଫଳକୁ ) ଚତୁର୍ଥ ଭାବରୁ ମିଶାଇ ଆଣିଲେ ସନ୍ଧିସହ ସପ୍ତମ ପର୍ଯ୍ୟନ୍ତ ଭାବସ୍ଫୁଟ ବାହାରିବ । ଏହାପରେ ପ୍ରତି ଭାବ ଓ ସନ୍ଧିରେ ଛ' ଛ' ରାଶି ମିଶାଇ ଆଣିଲେ ଅବଶିଷ୍ଟ ଭାବ ଓ ସନ୍ଧି ବାହାରିବ । ଭାବସ୍ଥ ଗ୍ରହ ପୂର୍ଣ୍ଣଫଳ ଓ ସନ୍ଧି ଗତଗ୍ରହ ଶୂନ୍ୟଫଳ ଦାୟକ ହୋଇଥାଏ ।

ଉଦା:---ପ୍ରଥମ ଲଗ୍ନ ରା ୧୧।୨୮।୩୬।୨୯ ଏଥିରେ ୬ ରାଶି-ମିଶାଇବାରୁ ସପ୍ତମ ଲଗ୍ନ ହେଲ ରା ୫।୨୮।୩୬।୨୯ ଦଶମ ଲଗ୍ନ ରା୮।୨୩।୨୮।୫୩ରେ ୬ ରାଶି ମିଶାଇବାରୁ ଚତୁର୍ଥ ଲଗ୍ନ ରା ୨।୨୩।-୨୮।୫୩ । ଏଥିରୁ ପ୍ରଥମ ଲଗ୍ନ ଫେଡ଼ିବାରୁ ରା ୨।୨୪।୫୨।୨୩ ହେଲା । ଏହାର ଷଷ୍ଠାଂଶ (ଅର୍ଥାତ୍ ୮।୪।୫୨।୨୩।୬ =) ୧୪।୮।୪୪କୁ ଲଗ୍ନରେ ମିଶାଇବାରୁ ।

ଅର୍ଥାତ୍:---ଲଗ୍ନ-୧୧।୨୮।୩୬।୨୯

ଷଷ୍ଠାଂଶ—୧୪।୮।୪୪

---

ଲଗ୍ନସନ୍ଧି ରା ୦।୧୨।୪୫।୧୩ ରେ

ଷଷ୍ଠାଂଶ ୦।୧୪।୮।୪୪ ଯୁକ୍ତ

---

ଧନଭାବ ରା ୦।୨୬।୫୩।୫୭

ଷଷ୍ଠାଂଶ ୦।୧୪।୮।୪୪ ଯୁକ୍ତ

---

ଧନସନ୍ଧି ରା ୧।୧୧।୨।୪୧

ଷଷ୍ଠାଂଶ ରା ୦।୧୪।୮।୪୪ ଯୁକ୍ତ

---

ତୃତୀୟଭାବ ରା ୧।୨୫।୧୧।୨୫

ଷଷ୍ଠାଂଶ ରା ୦।୧୪।୮।୪୪ ଯୁକ୍ତ

---

ତୃତୀୟସନ୍ଧି ରା ୨।୯।୨୦।୯

ଷଷ୍ଠାଂଶ ରା ୦।୧୪।୮।୪୪ ଯୁକ୍ତ

---

ଚତୁର୍ଥଭାବ ରା ୨।୨୩।୨୮।୫୩

ଏହି ଷଷ୍ଠାଂଶକୁ ୩୦ ଅଂଶରୁ ଘେନିବାରୁ ଗ୍ର ୦।୧୫।୫୧।୧୬ ଏହାକୁ ଚତୁର୍ଥ ଭାବରେ ମିଶାଇ ନେବାରୁ ଯଥା:—

ଚତୁର୍ଥଭାବ ଗ୍ର ୨।୨୩।୨୮।୪୩

୦।୧୫।୫୧।୧୬ ଯୁକ୍ତ

---

ଚତୁର୍ଥସନ୍ଧି---୩।୯।୨୦।୯

ଋଣ--- ୦।୧୫।୫୧।୧୬

---

ସୁତଭାବ ଗ୍ର ୩।୨୫।୧୧।୨୫

୦।୧୫।୫୧।୧୬

---

ସୁତସନ୍ଧି ଗ୍ର ୪।୧୧।୨।୪୧

୦।୧୫।୫୧।୧୬

---

ଷଷ୍ଠଭାବ ଗ୍ର ୪।୨୬।୫୩।୫୭

୦।୧୫।୫୧।୧୬

---

ଷଷ୍ଠସନ୍ଧି ଗ୍ର ୫।୧୨।୪୫।୧୩

୦।୧୫।୫୧।୧୬

---

ସପ୍ତମ ଭାବ ଗ୍ର ୫।୨୮।୩୬।୨୯

ଏହା ପରେ ଲଗ୍ନସନ୍ଧିଠାରୁ ଛ' ରାଶି ଲେଖେ ମିଶାଇ ନେଲେ ସପ୍ତମସନ୍ଧି ପ୍ରଭୃତି ଆସିବ ।

ଏହା ଭାବସ୍ଫୁଟ ଚକ୍ରରୁ ମଧ୍ୟ ସ୍ଫୁଟ ଜଣାଯିବ

## ସମସ୍ତ ଦ୍ୱାଦଶ ଭାବ ସ୍ପଷ୍ଟ ଚକ୍ର

| ଭାବ | ତନୁ | ସନ୍ଧି | ଧନ | ସନ୍ଧି | ସହଜ | ସନ୍ଧି | ସୁଖ | ସନ୍ଧି | ସୁତ | ସନ୍ଧି | ରିପୁ | ସନ୍ଧି |
|---|---|---|---|---|---|---|---|---|---|---|---|---|
| ରାଶି | ୧୧ | ୦ | ୦ | ୦ | ୧ | ୨ | ୨ | ୩ | ୩ | ୪ | ୪ | ୫ |
| ଅଂଶ | ୨୮ | ୧୨ | ୨୬ | ୧୧ | ୨୫ | ୯ | ୨୩ | ୯ | ୨୫ | ୧୧ | ୨୬ | ୧୨ |
| କଳା | ୩୬ | ୪୫ | ୫୩ | ୨ | ୧୧ | ୨୦ | ୨୮ | ୨୦ | ୧୧ | ୨ | ୫୩ | ୪୫ |
| ବିକଳା | ୨୯ | ୧୩ | ୫୭ | ୪୧ | ୨୫ | ୯ | ୫୩ | ୯ | ୨୫ | ୪୧ | ୫୭ | ୧୩ |
| ଭାବ | ଜାୟା | ସନ୍ଧି | ମୃତ୍ୟୁ | ସନ୍ଧି | ଧର୍ମ | ସନ୍ଧି | କର୍ମ | ସନ୍ଧି | ଆୟୁ | ସନ୍ଧି | ବ୍ୟୟ | ସନ୍ଧି |
| ରାଶି | ୫ | ୬ | ୬ | ୭ | ୭ | ୮ | ୮ | ୯ | ୯ | ୧୦ | ୧୦ | ୧୧ |
| ଅଂଶ | ୨୮ | ୧୨ | ୨୬ | ୧୧ | ୨୫ | ୯ | ୨୩ | ୯ | ୨୫ | ୧୧ | ୨୬ | ୧୨ |
| କଳା | ୩୬ | ୪୫ | ୫୩ | ୨ | ୧୧ | ୨୦ | ୨୮ | ୨୦ | ୧୧ | ୨ | ୫୩ | ୪୫ |
| ବିକଳା | ୨୯ | ୧୩ | ୫୭ | ୪୧ | ୨୫ | ୯ | ୫୩ | ୯ | ୨୫ | ୪୧ | ୫୭ | ୧୩ |

ଚଳିତ ଚକ୍ର ବା ଭାବକୁଣ୍ଡଳୀ ବିଚାର:—ଭାବ ସ୍ପଷ୍ଟ ଓ ଗ୍ରହସ୍ପଷ୍ଟକୁ ନେଇ କେଉଁ ଗ୍ରହ କେଉଁ ଭାବରେ ଅଛି ତାହା ସ୍ଥିର କରିନେବ ।

## ଚଳିତ ଚକ୍ର ବା ଭାବ କୁଣ୍ଡଳୀ




ରବି ରା ୧ । ୧୬ । ୯ । ୪୬ ହୋଇ ଧନ ଭାବ ସନ୍ଧି ରା ୧ । ୧୧ । ୨ । ୪୧ ରୁ ଅଧିକ ଅଛି ଏବଂ ସହଜ ଭାବଠାରୁ କମ ହୋଇଛି ତେଣୁ ରବି ପ୍ରକୃତରେ ସହଜ ଭାବରେହିଁ ଅଛି । ଏହିପରି ସମସ୍ତ ଗ୍ରହସ୍ଥିତି ନିର୍ଣ୍ଣୟ କରାଯିବ । ଯେହେତୁ:-

**ବିନା ଚଳିତ ଚକ୍ରେଣ ବ୍ରୂ ଯୋକ୍ତଂ ଭାବକଂ ଫଳମ୍**
**ଯଥା ଅଳଂକୃତା ନାରୀ ପତିହୀନା ନଶୋଭତେ ।**

## ଭାବସ୍ଥ ଗ୍ରହ ଫଳ ବର୍ଣ୍ଣନ:-

ଖେଟଃ ସନ୍ଧି ଦ୍ୱୟାନ୍ତଃସ୍ଥ ଫଳଂତଦ୍ଭାବଜଂଭବେତ୍
ହୀନେଽଧିକେ ଦ୍ୱିସନ୍ଧିଭ୍ୟାଂ ଭବେ ପୂର୍ବ।ପରେ ଫଳମ୍ ।

ଆରମ୍ଭ ସନ୍ଧି ଓ ବିରାମ ସନ୍ଧିର ମଧ୍ୟସ୍ଥ ଗ୍ରହ ସେହି ଭାବର ଫଳ ଦିଏ। ଆରମ୍ଭ ସନ୍ଧିରୁ ଗ୍ରହସ୍ଫୁଟ କମ୍ ହେଲେ ପୂର୍ବ ଭାବର ଫଳ ଦେଇଥାଏ। ସେହିପରି ବିରାମ ସନ୍ଧିରୁ ଗ୍ରହସ୍ଫୁଟ ଅଧିକ ଥିଲେ ଆଗ୍ରିମ ଭାବର ଫଳଦାନ କରେ।

## ଦ୍ରେଷ୍କାଣ ଚକ୍ର ବର୍ଣ୍ଣନ:—

ଯେପରି ଲଗ୍ନସ୍ଫୁଟରୁ ଧରି ଲଗ୍ନଦ୍ରେଷ୍କାଣ ସ୍ଥିର କରାଯାଏ। ସେହିପରି ଗ୍ରହସ୍ଫୁଟରୁ ଧରି ଗ୍ରହ ମାନଙ୍କର ଦ୍ରେଷ୍କାଣ ସ୍ଥିର କରା ଯାଇଅଛି:—



ପ୍ରୟୋଜନ:—"ଦ୍ରେଷ୍କାଣୈଶ୍ଚ ବୈଭ୍ରିଙ୍ଗଂ ଭବନ୍ତିହେ"

ଦ୍ରେଷ୍କାଣ ଚକ୍ରରୁ ଭାଇମାନଙ୍କ ଶୁଭାଶୁଭାଦ ବିଚାର କରାଯାଏ । କିନ୍ତୁ ଦ୍ରେଷ୍କାଣ·କୁଣ୍ଡଳୀରୁ କର୍ମଫଳ ବିଚାର କରାଯାଏ ବୋଲି ଜ୍ୟୋତି ଗ୍ରନ୍ଥରେ ଲେଖାଯାଇ ଅଛି ।

## ନବାଂଶ ଚକ୍ର ବିଚାର:—

ଲଗ୍ନ ସ୍ଫୁଟକୁ ନେଇ ଚରରାଶି ମାନଙ୍କର ସେହିଠାରୁ, ସ୍ଥିର ରାଶି ମାନଙ୍କର ସେହି ରାଶିର ନବମରୁ, ଦ୍ୱିସ୍ୱଭାବରାଶି ମାନଙ୍କର ସେହି ରାଶିର ପଞ୍ଚମରୁ ପ୍ରତ୍ୟେକ ୩ ଅଂଶ କଳା ହିସାବରେ ଦେଇ ନେଇ ନବାଂଶଲଗ୍ନ ସ୍ଥିର କରାଯାଏ । ସେହିପରି ଗ୍ରହ ସ୍ଫୁଟକୁ ଧରି ଗ୍ରହମାନଙ୍କର ନବାଂଶ ସ୍ଥିର କରିବେ ।

## ଅଥବା

ପୂଷ୍ଟଲକ୍ଷଂ ଚତୁର୍ଘୁର୍ଣ୍ଣିଂ ଭୁକ୍ତ ପାଦେନ ମିଶ୍ରିତମ୍
ସୂର୍ଯ୍ୟେଣ ହରତେ ଶେଷଂ ଖେଟ ସ୍ଥାନଂ ନିରୁପଯେତ୍ ।

ଗ୍ରହ ଭୁକ୍ତ ନକ୍ଷତ୍ରର ପୂର୍ବ ନକ୍ଷତ୍ରକୁ ୪ ଦ୍ୱାରା ଗୁଣି ଗ୍ରହଭୁକ୍ତ ନକ୍ଷତ୍ର ପାଦକୁ ସେଥିରେ ମିଶାଇ ୧୨ ରେ ହରଣ କଲେ ଶେଷଥିବା ସଂଖ୍ୟାହିଁ ସେହି ଗ୍ରହର ନବାଂଶ ସ୍ଥାନ ହେବ ।

ଏହି ଅନୁସାରେ ପୂର୍ବୋକ୍ତ ଜାତକର ନବାଂଶ ଚକ୍ର ଯଥା:—




**ପ୍ରୟୋଜନ:**—ପରାଶର ଜୈମିନି ପ୍ରଭୃତି ମୁନିଗଣ ଏହି ନବାଂଶକୁ ଧରି ବହୁବିଧ ଯୋଗାଯୋଗ ଓ ଫଳାଫଳ ନିର୍ଣ୍ଣୟ କରି ଯାଇଛନ୍ତି ଯଥା:—"ଲଗ୍ନ ନବାଂଶପତିତୁଲ୍ୟ ତନୁଃସ୍ୟାଦ୍ ବୀର୍ଯ୍ୟ ଯୁତ-ଗ୍ରହତୁଲ୍ୟ ବାପୁର୍ବା- ଇତ୍ୟାଦି" ଅର୍ଥାତ୍ ଲଗ୍ନ- ନବାଂଶାଧିପତି ଗ୍ରହର ବା ସର୍ବାପେକ୍ଷା ବଳବାନ୍ ଗ୍ରହର ସ୍ୱରୂପ ଅନୁସାରେ ଜାତକର ସ୍ୱରୂପ କଳ୍ପନା କରାଯାଏ । ଏବଂ ପ୍ରଶ୍ନ ଲଗ୍ନର ନବାଂଶାଧିପତି ଗ୍ରହ- ଠାରୁ ଅପହୃତ, ନଷ୍ଟ ଓ ଚିନ୍ତିତ ବସ୍ତୁ ପ୍ରଭୃତି ଜ୍ଞାପନ କରାଯାଏ ।

**ଦ୍ୱାଦଶାଂଶ:**—

ଗ୍ରହଥିବା ରାଶିରୁ ୨ ଅଂଶ ୩୦ କଳା ହିସାବରେ ଦେଇଦେଲେ ଦ୍ୱାଦଶାଂଶ ଚକ୍ର ସ୍ଥିର କରିବେ ।

ସେହିପରି ପୂର୍ବୋକ୍ତ ଜାତକର ଦ୍ୱାଦଶାଂଶ ଚକ୍ର:—




**ପ୍ରୟୋଜନ:**—"ସ୍ୟାଦ୍ଦ୍ୱାଦଶାଂଶେ ପିତୃ ମାତୃ ସୌଖ୍ୟମ୍" ଦ୍ୱାଦଶାଂଶରୁ ପିତାମାତାର ସୁଖ ଦୁଃଖାଦି ବିଷୟ ବିଚାର କରାଯାଏ। କିନ୍ତୁ କାହାର କାହାର ମତରେ ଦେହୀ ବିଷୟରେ ମଧ୍ୟ ଚିନ୍ତା କରାଯାଏ।

## ତ୍ରିଂଶାଂଶ:-

ନବାଂଶାଦି ଚକ୍ର ଯେପରି ସ୍ଥିର କରାଯାଇଅଛି ତ୍ରିଂଶାଂଶ-ଚକ୍ର ମଧ୍ୟ ସେହିପରି ସ୍ଥିର କରାଯିବ।

**ପ୍ରୟୋଜନ:**-ତ୍ରିଂଶାଂଶ ଚକ୍ରରୁ ଆୟୁ, ଓ ରିଷ୍ଟାଦି ଚିନ୍ତା କରାଯାଏ।

ଜନ୍ମ ସମୟରେ ରବି ଯେଉଁ ଗ୍ରହର ତ୍ରିଂଶାଂଶରେ ଥିବ ତାର ସତ୍ତ୍ୱ, ରଜ, ତମ ଇତ୍ୟାଦି ଗୁଣାଧିକାର ଭେଦରେ ଜାତକର ସେହି ଗୁଣାଧିକ୍ୟ କଳ୍ପନା କରାଯାଏ ।

ଏଥିରୁ ସ୍ତ୍ରୀ ଜାତର ଚରିତ୍ରାଦି ବିଷୟରେ ମଧ୍ୟ ବିଶେଷ ଫଳାଫଳ ଜାଣିହୁଏ ।

## ବିଂଶୋତ୍ତରୀ ଦଶା ସାଧନ:-

ପୂର୍ବୋକ୍ତ ଜାତକର କୃତ୍ତିକା ନକ୍ଷତ୍ର ତେବେ ଭଭୋଗ ( ଋକ୍ଷାଦ୍ୟନ୍ତ ) ଦ ୬୭ । ୩୫ ଭୟାତ ( ନଷ୍ଟ ଭୋଗ ) ଦ ୭ । ୪୯ ଭୟାତକୁ ଲିପ୍ତାକରିବାରୁ ୪୬୯ ହେଲ । କୃତ୍ତିକା ନକ୍ଷତ୍ର ହେତୁ ରବିଦଶା ହେଲା । ରବି ଦଶାର ବର୍ଷ ୬, ଏଥିରେ ଭୟାତକୁ ଗୁଣିବାରୁ (୪୬୯ × ୬) = ୨୮୧୪ ହେଲା । ଭ ଭୋଗ ଦ ୬୭।୩୫ ବା ୪୦୫୫ ରେ ହରଣ କରିବାରୁ (୨୮୧୪ ÷ ୪୦୫୫ = ୦) ଲବ୍ଧ ପଡ଼ିଲା ଶୂନ୍ୟ ବର୍ଷ, ଶେଷ ୨୮୧୪ କୁ ୧୨ ରେ ଗୁଣି ସେହି ହରଣରେ ହରିବାରୁ (୨୮୧୪ × ୧୨ = ୩୩୭୬୮ ÷ ୪୦୫୫ = ୮) ଲବ୍ଧ ୮ ମାସ ହେଲା, ଶେଷକୁ ୩୦ ରେ ଗୁଣି ସେହି ହରଣରେ ହରିବାରୁ ( ୧୩୨୮ × ୩୦ = ୩୯୮୪୦ ÷ ୪୦୫୫ = ୯ ) ଲବ୍ଧ ୯ ଦିନ ହେଲା ପୁଣି ଅଂଶକୁ ୬୦ ରେ ଗୁଣି ସେହି ଭାଜକରେ ଭାଗ ଦେବାରୁ ଲବ୍ଧି ୪୯ ଦଣ୍ଡ ହେଲା ।

ଅର୍ଥାତ୍ ଜନ୍ମସମୟକୁ ରବି ଦଶାରୁ ବ ୦ । ୮ । ୯ । ୪୯ ଦଣ୍ଡ ଭୋଗ ହୋଇଅଛି ବୋଲି ଜଣାଗଲା ।

ରବି ବର୍ଷ ୬ ରୁ ଏହି ଯୋଗ ମାନଙ୍କୁ ଫେଡ଼ିବାରୁ ( ୬— ୦ । ୮ । ୯ । ୪୫= ) ରବି ଦଶା ଶେଷ ହେବାକୁ ବାକି ବ ୫ । ୩ । ୨୦ । ୧୫ ଦଣ୍ଡ ବୋଲି ଜଣାଗଲା ।

## କାରକ ଚକ୍ର

| | | | | | | |
|---|---|---|---|---|---|---|
| ଆତ୍ମା | ଅମାତ୍ୟ | ଭ୍ରାତୃ | ମାତୃ | ପୁତ୍ର | ଜ୍ଞାତି | ଦାର |
| ଚନ୍ଦ୍ର | ମଙ୍ଗଳ | ଶୁକ୍ର | ବୃହସ୍ପତି | ବୁଧ | ରବି | ଶନି |
| ୦ | ୯ | ୨ | ୭ | ୦ | ୧ | ୬ |
| ୨୮ | ୨୬ | ୨୩ | ୨୩ | ୨୧ | ୧୭ | ୩ |
| ୧୨ | ୨୩ | ୧୪ | ୩ | ୫.୪ | ୯ | ୧୮ |
| ୩୫ | ୩୩ | ୧ | ୩୬ | ୫୦ | ୪୬ | ୪୫ |

ଆତ୍ମକାରକ ଗ୍ରହର ନବମାଂଶ ହିଁ କାରକାଂ ଲଗ୍ନ ହେବ:—

ଯଥା:- କାରକାଂଶ କୁଣ୍ଡଳୀ



**ଚରଦଶା ବିଚାରଃ-**

ଯଥା:—ପୂର୍ବୋକ୍ତ ଜାତକର ମୀନ ଲଗ୍ନ ଏହାର ଅଧିପତି ସମ-ରାଶିରେ ଥିବାରୁ (ସମପଦ ହେଲା) ଲଗ୍ନସ୍ଫୁଟରୁ ବୃହସ୍ପତି ସ୍ଫୁଟ ଫେଡିବାରୁ ( ୧୧।୨୮।୩୬।୨୯—୭।୨୩।୩।୩୬) ଶେଷ ୪।୫।୩୨।୫୩ ହେଲା । ଏଥିରେ ରାଶି ସଂଖ୍ୟାକୁ ବର୍ଷ ରୂପେ ଧରାଗଲା, (ଅର୍ଥାତ୍--୪ ବର୍ଷ ହେଲା) ଅଶାଂଦକୁ ଦୁଇ ଗୁଣ କରିବାରୁ ୧୧।୫।୪୬ ହେଲା । ଏହାକୁ ୫ ରେ ଭାଗ ଦେବାରୁ ଲବ୍ଧ ୨ ମାସ ପଡିଲା, ଶେଷ ୧।୫।୪୫ କୁ ୩୦ ରେ ଗୁଣିବାରୁ ୩୨।୫୩ ହେଲା, ଏହାକୁ ୫ ରେ ଭାଗ ଦେବାରୁ ଲବ୍ଧ ୬ ଦିନ ହେଲା, ଅବଶିଷ୍ଟ କୁ ୬୦ ରେ ଗୁଣି ୫୩ ମିଶାଇ ସେହି ୫ରେ ଭାଗ ଦେବା ରୁ ଦଣ୍ଡ ୩୯ ଓ ଲିତା ୩୬ ହେଲା । ତେବେ ଲଗ୍ନର ଦଶା ବର୍ଷାଦି ବ ୪।-୨।୦।୪୬।୩୬ ହେଲା । ଏହି ପ୍ରକାରେ ସମ, ବିଷମ ପଦ ଭେଦରେ ଦ୍ୱାଦଶ ରାଶି ଦଶା ବାହାର କରିବେ ।

ଏଠାରେ ସମ ଲଗ୍ନ ହୋଇ ଥିବାରୁ ଏବଂ ଏହାର ନବମ ରାଶି ସମପଦ ହୋଇ ଥିବାରୁ ମୀନ କୁମ୍ଭାଦି ବିପରୀତରେ ଦଶାମାନ ଲେଖା ଯାଇଅଛି । କେଉଁ ଦିନ ଠାରୁ କେଉଁ ଦଶା ଆରମ୍ଭ ହେବ ଏହା ଜାଣିବା ପାଇଁ ଏହି ଚକ୍ରରେ ଦଶାମାନ--ସହ ଜନ୍ମ ଶକାବ୍ଦ ଓ ରବି ସ୍ଫୁଟ ମିଶାଇ ଦେଖାଇ ଦିଆଗଲା ।

## ଚର ଦଶା ଚକ୍ର:—

| ମୀ | କୁ | ମ | ଧ | ବୃ | ତୁ | କ | ସିଂ | କର୍କ | ମି | ବୃ | ମେ | |
|---|---|---|---|---|---|---|---|---|---|---|---|---|
| ୪ | ୭ | ୮ | ୧ | ୧୧ | ୭ | ୬ | ୩ | ୯ | ୪ | ୦ | ୩ | |
| ୨ | ୫ | ୩ | ୦ | ୧୧ | ୧୦ | ୯ | ୩ | ୧ | ୧୧ | ୧୧ | ୦ | |
| ୬ | ୧୬ | ୭ | ୫ | ୧୫ | ୧୬ | ୮ | ୨୬ | ୧୮ | ୧୧ | ୧୮ | ୬ | |
| ୩୪ | ୩୫ | ୨୮ | ୩ | ୩୪ | ୦ | ୪୦ | ୫୦ | ୨ | ୧୧ | ୭ | ୧୦ | |
| ୩୬ | ୦ | ୦ | ୨୪ | ୨୪ | ୫୦ | ୧୨ | ୧୨ | ୦ | ୨୪ | ୧୨ | ୪୮ | |
| ୧୮୪୬ | ୫୦ | ୫୭ | ୬୫ | ୭୭ | ୭– ୮୬ | ୮୩, ୯୩, ୧୮୯୬ | ୧୯୦୬ | ୧୯୧୧, ୧୯୧୧, ୧୯୧୪ | | | | |
| ୧ | ୩ | ୯ | ୦ | ୦ | ୧୧ | ୧୦ | ୭ | ୧୧ | ୦ | ୦ | ୧୧ | ୦ |
| ୧୭ | ୨୩ | ୧୦ | ୨୭ | ୩ | ୧୮ | ୪ | ୧୪ | ୧୧ | ୨୯ | ୧୦ | ୨୮ | ୪ |
| ୯ | ୪୪ | ୨୯ | ୫୭ | ୦ | ୩୫ | ୩୫ | ୧୫ | ୫ | ୭ | ୧୮ | ୨୬ | ୩୬ |
| ୪୬ | ୨୨ | ୨୨ | ୨୨ | ୪୭ | ୧୦ | ୦ | ୧୨ | ୨୪ | ୨୮ | ୯୮ | ୦ | ୪୮ |

ଏହି ବାର୍ଷାଦି ଗୁଣକୁ ମିଶାଇଲେ ଚରଦଶା ଅନୁ ସାରେ ଆୟୁ ମାନ ବ ୬୮ । ୧୧ ।- ୭ । ୪୮ । ୨ ହୋଇଛି ।

## ପଦ ବା ଅରୁଣ ବର୍ଗ:-

"ଯାବଦୀଶା ଶ୍ରମ୍ଂ ପଦ ମୃଷ୍ଟାଣାମ୍" ଏହି ସୂତ୍ରାନୁସାରେ ପୂର୍ବୋକ୍ତ ଶାଖାଙ୍କର ପଦ ବର୍ଗ କରାଯାଉଛି ।

### ପଦ ସ୍ଥାନ

| | | | | | | | | | | | |
|---|---|---|---|---|---|---|---|---|---|---|---|
| ଳ | ଧ୍ରି | ଊ | ଠ | ଗ | ଷ | ଯ | ଅ | ନ | ଫ | ଏ | ଦ୍ଧ |
| ୩ | ୬ | ୩ | ୧୦ | ୧୦ | ୧୦ | ୭ | ୨୦ | ୧୦ | ୬ | ୨ | ୧ |
| ୭ | ୨୫ | ୨୧ | ୨୦ | ୧ | ୭ | ୧୪ | ୧୯ | ୨୬ | ୨୨ | ୧୧ | ୯ |
| ୩୦ | ୪୩ | ୧୬ | ୨୮ | ୮୩ | ୨୫ | ୧୩ | ୩୦ | ୩୪ | ୦୮ | ୨୬ | ୪୩ |
| ୮୩ | ୯ | ୩୭ | ୪୭ | ୪୪ | ୩୪ | ୧୧ | ୫ | ୪୧ | ୨୯ | ୫ | ୭୩ |

## ପଦ କୁଣ୍ଡଳୀ




ବିଷମ ରାଶିର କ୍ରମ ଗଣନା ଓ ସମରାଶିର ଉତ୍କ୍ରମ ଗଣନାନୁସାରେ ପଦଦଶା ବିଚାର କରାଯାଏ । ଯେପରି:—ଏଠାରେ ମୀନଲଗ୍ନ ସମରାଶି ଅଟେ ତେଣୁ ଲଗ୍ନରୁ ଲଗ୍ନ ସ୍ଫୁଟକୁ ପେଞ୍ଚିବାରୁ ( ୧୧ । ୨୮ । ୩୬ । ୨୯ । ୩ । ୧୭ । ୩୦।-୪୩ ) ଶେଷ ୮ । ୧୧ । ୫ । ୪୬ ହେଲା । ଚରଦଶା ପରି ଏହ୍ୱାର ଦଶା ସାଧନ କରିବାରୁ ଲଗ୍ନର ପଦ ଦଶା ବର୍ଷାଦି ୮ । ୪ । ୧ । ୩୩ । ୧୨ ହେଲା, ଏହି ପରି ଦ୍ୱାଦଶପଦ ପର୍ଯ୍ୟନ୍ତ ପଦ ଦଶା ବର୍ଷାଦି ବିଚାର କରିବାକୁ ହେବ ।

## ହୋରାଲଗ୍ନ:—

ଇଷ୍ଟ ଦ ୫୨ । ୫୬ । ଦା ୩୧୭୬ କୁ ୧୫୦ ରେ ହରିବାରୁ ( ରାଶି ୧୨ ରୁ ଅଧିକ ହେବାରୁ ୧୨ ଭାଗ ହୋଇଛି ), ରାଶ୍ୟାଦି ୯ । ୫ । ୧୨ ହେଲା । ଏଥିରେ ରବିସ୍ଫୁଟ ୧ ।- ୧୭ । ୯ । ୪୬ ମିଶାଇ ଦାରୁ ହୋରାଲଗ୍ନ ସ୍ଫୁଟ ରାଶ୍ୟାଦି । ରା ୧୦ । ୨୨ । ୨୧ । ୪୬ ଏଥିରେ ଏକ ଏକ ରାଶି ମିଶାଇଲେ ହୋରା ଲଗ୍ନର ଦ୍ୱାଦଶ ଭାବ ହେବ ।

## ହୋରାଚକ୍ର:-



## ଯଥା:-ହୋରାଲଗ୍ନ-ଦ୍ୱାଦଶ ଭାବ, (ଆର୍ଷମତେ)

| ଲ | ଦ୍ୱି | ତୃ | ଚ | ପ | ଷ | ସ | ଅ | ନ | ଦ | ଏ | ଦ୍ୱା |
|---|---|---|---|---|---|---|---|---|---|---|---|
| ୧୦ | ୧୧ | ୦ | ୧ | | ୩ | ୪ | ୫ | ୬ | ୭ | ୮ | ୯ |
| ୨୨ | ୨୨ | ୨୨ | | ୨୨ | ୨୨ | ୨୨ | ୨୨ | ୨୨ | ୨୨ | ୨୨ | ୨୨ |
| ୨୧ | ୨୧ | ୨୧ | ୨୧ | ୨୧ | ୨୧ | ୨୧ | ୨୧ | ୨୧ | ୨୧ | ୨୧ | ୨୧ |
| ୪୬ | ୪୬ | ୪୬ | ୪୬ | ୪୬ | ୪୬ | ୪୬ | ୪୬ | ୪୬ | ୪୬ | ୪୬ | ୪୬ |

## ବର୍ଣ୍ଣଦ ସାଧନ:-

ଲଗ୍ନ ଓ ହୋରା ଲଗ୍ନର ଯୋଗ ବିଷମ ରାଶି ହେଲେ, ସେହି-ଠାରୁ ଏବଂ ସମରାଶି ହେଲେ ସେହି ଯୋଗକୁ ୧୨ ରୁ ଫେଡି ବର୍ଣ୍ଣଦ ରାଶି ଲେଖା ଯିବ, ଲଗ୍ନାଦି ଛ' ଭାବପରି ସପ୍ତମାଦି ଛଅଟି ଭାବର ବର୍ଣ୍ଣଦ ହେବ। ଲଗ୍ନଠୁଁ ଦୁଇ ଦୁଇ ରାଶି ବୃଦ୍ଧିକରି ବା ଦୁଇରାଶି ଲେଖେଁ ନ୍ୟୂନ କରି ଦ୍ୱାଦଶଟି ବର୍ଣ୍ଣଦ ଗଠନ କରିଥାଏ।

ଏହାପରେ ଜନ୍ମଲଗ୍ନ ଓ ହୋରାଲଗ୍ନ ମଧ୍ୟରେ ଯେ ବଳବାନ୍ ତାହାଠାରୁ ବିଷମ ସମ ଭେଦରେ ଓ କ୍ରମ ଉତ୍କ୍ରମ ରୀତିରେ ଚରଦଶା ପରି "ବର୍ଣ୍ଣଦାନ୍ତା ସମାଃ" ଏହି ନିୟମାନୁସାରେ ଦଶା ସାଧନ କରିବା ଉଚିତ। ବିଷମ ଲଗ୍ନରେ ଲଗ୍ନ ଦ୍ୱିତୀୟାଦି କ୍ରମରେ ଏବଂ ସମଲଗ୍ନ ହେଲେ ଲଗ୍ନ ଦ୍ୱାଦଶାଦି ଉତ୍କ୍ରମରେ ଦଶା ଲେଖାଯିବ।

## ବର୍ଣ୍ଣଦ ରାଶି :-

| ଲ. ସ. | ୨ଯୁ. ୮ମ. | ୩ଯୁ. ୯ମ. | ୪ର୍ଥ. ୧୦ମ. | ୫ମ. ୧୧ଦଶ. | ୬ଷ୍ଠ. ୧୨ଦଶ. |
|---|---|---|---|---|---|
| ୧୦ | ୦ | ୨ | ୪ | ୬ | ୮ |
| ୧୦ | ୧୦ | ୧୦ | ୧୦ | ୧୦ | ୧୦ |
| ୫୮ | ୫୮ | ୫୮ | ୫୮ | ୫୮ | ୫୮ |
| ୧୫ | ୧୫ | ୧୫ | ୧୫ | ୧୫ | ୧୫ |

ଏଠାରେ ଜନ୍ମଲଗ୍ନ ମୀନ—ଏବଂ ହୋରା ଲଗ୍ନ କୁମ୍ଭ, ଗ୍ରହଯୁକ୍ତ ହୋଇ ଥିବାରୁ ହୋରାଲଗ୍ନହିଁ ବଳମାନ୍ ଅଟେ । ପୁଣି ଏହା ଷଷ୍ଠମ ରାଶି ଯୋଗୁଁ ବର୍ଣ୍ଣଦରୁ ଫେଡା ହେଲା ।

ଯଥା:—ବ ୧୦ । ୧୦ । ୫୮ । ୧୫—ହୋ:-୧୦ । ୨୨ । ୨୧ । ୪୬=୧୧ ୧୮ । ୩୬ । ୨୯ ପୂର୍ବପର ଏହାର ଦଶାବର୍ଷ ବ ୧୯ । ୭ । ୧୩ ।- ୧୭ ହେଲା । ଏହି ହିସାବରେ ଅନ୍ୟାନ୍ୟ ଭାବ ମାନଙ୍କର ରାଶି ବର୍ଣ୍ଣଦ ଦଶା ସ୍ଥିର କରିବେ ।

## ଭାବବର୍ଣ୍ଣାଦ ବର୍ଗ୍ନର:—

ଯେପରି ରାଶି ବର୍ଣ୍ଣଦ ଲଗ୍ନର ଦ୍ୱାଦଶ ଭାବ ଏବଂ ହୋରା ଲଗ୍ନର ଦ୍ୱାଦଶ ଭାବ ବର୍ଗ୍ଗର କରାଯାଇଛି, ସେହିପରି ଭାବଲଗ୍ନର ଦ୍ୱାଦଶ ଭାବ ଓ ଗୁଳିକ ଲଗ୍ନର ଦ୍ୱାଦଶ ଭାବ ସ୍ଥିର କଲାପରେ ଦ୍ୱାଦଶ ଭାବର 'ଭାବବର୍ଣ୍ଣାଦ' ସ୍ଥିର କରିବେ ।

ଏହା ପରେ 'ଭାବ ବର୍ଣ୍ଣଦା' ଓ ଗୁଳିକ ଲଗ୍ନମଧ୍ୟରେ ଯେ ବଳବାନ୍ ତାଠାରୁ 'ଭାବ ବର୍ଣ୍ଣାଦ' ଦଶାଆରମ୍ଭ କରିବେ । କିନ୍ତୁ ମନେରଖିବା ଉଚିତଯେ ଏହିଦଶା ମଧ୍ଯ ଜନ୍ମ ଲଗ୍ନାଦି ଦ୍ୱାଦଶ ଭାବ ସମ୍ବନ୍ଧରାଶି ମାନଙ୍କୁ ନେଇ ଗଠିତ ।

ଭାବଲଗ୍ନ:—

ସୂର୍ଯ୍ୟୋଦୟାଦ ଇଷ୍ଟ ଦ ୫୨ । ୫୬ କୁ ୫ ରେ ହରଣ କରିବାରୁ ରାଶ୍ୟାଦ ୧୦ । ୧୭ । ୬୬ ହେଲା । ଏଥିରେ ରବି ସ୍ଫୁଟ (ରା ୧ । ୧୭ ୯ । ୪୬) ମିଶାଇ ବାରୁ ରା ୦ । ୨୩ । ୨୬ । ୪୬; ଏହା ଭାବଲଗ୍ନ ସ୍ଫୁଟ ହେଲା ।

## ଭାବଲଗ୍ନର ଦ୍ୱାଦଶ ଭାବ:—

| ଲ | ଦ୍ୱି | ତୃ | ଚ | ପ | ଷ | ସ | ଅ | ନ | ଦ | ଏ | ଦ୍ୱା |
|---|---|---|---|---|---|---|---|---|---|---|---|
| | ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ | ୧୧ |
| ୨୩ | ୨୩ | ୨୩ | ୨୩ | ୨୩ | ୨୩ | ୨୩ | ୨୩ | ୨୩ | ୨୩ | ୨୩ | ୨୩ |
| ୨୬ | ୨୬ | ୨୬ | ୨୬ | ୨୬ | ୨୬ | ୨୬ | ୨୬ | ୨୬ | ୨୬ | ୨୬ | ୨୬ |
| ୪୬ | ୪୬ | ୪୬ | ୪୬ | ୪୬ | ୪୬ | ୪୬ | ୪୬ | ୪୬ | ୪୬ | ୪୬ | ୪୬ |

### ଗୁଳିକ ଲଗ୍ନ ସାଧନ

"ରବିବାରାଦି ଶନ୍ୟନ୍ତଂ—" ଇତ୍ୟାଦି ନିୟମାନୁସାରେ ସ୍ଫୁଟ ଗୁଳିକେଷ୍ଟ ଘ ୧୨। ୪୨ ରବି ସ୍ଫୁଟକୁ ଧରି ଲଗ୍ନ ସାଧନ କରିବାରୁ ଗୁଳିକ ଲଗ୍ନ ଘ ୧୦ । ୨ । ୫୩ । ୪୯ ହେଲ ।

## ଗୁଳିକର ଦ୍ୱାଦଶ ଭାବ:—

| ଗୁ | ଦ୍ୱି | ତୃ | ଚ | ପ | ଷ | ସ | ଅ | ନ | ଦ | ଏ | ଦ୍ୱା |
|---|---|---|---|---|---|---|---|---|---|---|---|
| ୧୦ | ୧୧ | ୦ | ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ |
| ୨ | ୨ | ୨ | ୨ | ୨ | ୨ | ୨ | ୨ | | ୨ | ୨ | ୨ |
| ୫୩ | ୫୩ | ୫୩ | ୫୩ | ୫୩ | ୫୩ | ୫୩ | ୫୩ | ୫୩ | ୫୩ | ୫୩ | ୫୩ |
| ୪୯ | ୪୯ | ୪୯ | ୪୯ | ୪୯ | ୪୯ | ୪୯ | ୪୯ | ୪୯ | ୪୯ | ୪୯ | ୪୯ |

ପୂର୍ବରୀତିରେ ଭାବ ବର୍ଣ୍ଣିଦ:—

| ଲ. ସ. | ଦ୍ୱି. ଅ. | ତ୍ରି. ନ. | ଚ. ଦ. | ପ. ଏ. | ଷ. ଦ୍ୱା. |
|---|---|---|---|---|---|
| ୧୦ | ୦ | ୨ | ୪ | ୬ | ୮ |
| ୨୬ | ୨୬ | ୨୬ | ୨୬ | ୨୬ | ୨୬ |
| ୨୦ | ୨୦ | ୨୦ | ୨୦ | ୨୦ | ୨୦ |
| ୩୪ | ୩୪ | ୩୪ | ୩୪ | ୩୪ | ୩୪ |

ଏଠାରେ ଭାବଲଗ୍ନ ବୃଷ ଓ ଗୁଳିକ ଲଗ୍ନ କର୍କଟ । ଏ ଦୁହେଁ ଗ୍ରହଯୁକ୍ତ ହୋଇଥିଲେ ମଧ୍ୟ ଏହା ଭିତରେ ଭାବ ଲଗ୍ନହିଁ ବଳବାନ୍ ଏବଂ ବିଷମ ରାଶି ଅଟେ । ତେଣୁ ଏହାକୁ ବର୍ଷରୁ ଫେଡିବାରୁ ( ୧.୮ । ୨୬ ୨୦ । ୩୫—୦ । ୨୩ । ୨.୬ । ୪୬ ) ଶେଷ ୧୦ । ୫୩ । ୪୯ ପୂର୍ବ ବତରେ ଦଶା ସାଧନ କରିବାରୁ ଲଗ୍ନର ଦଶା ୬ । ୧ । ୦ । ୪ । ୪୫ । ୪୮ ହେଲା । ଏହି ହିସାବରେ ବାରଟିଯାକ ଭାବର ଦଶା ସାଧନ ହୋଇ ପାରିବ । ଏଠାରେ ମଧ୍ୟ ଜନ୍ମଲଗ୍ନ ବିଷମ ହେଲେ କ୍ରମରେ ଏବଂ ସମ ହେଲେ ଉତ୍କ୍ରମରେ ଦଶା ଗୁଡ଼ିକ ଲେଖା ଯିବ ।

## ଅନ୍ତର୍ଦଶା ବିଚାର:-

ଲଗ୍ନର ଚରଦଶା ବର୍ଷ ୪ । ୨ । ୬ । ୩୦ । ୩୬ ଏହାର ଦ୍ୱାଦଶାଂଶ ମାସାଦି ୦ ୪ । ୫ । ୩୨ । ୫୩ ହେଲା । ଲଗ୍ନଠୁଁ ବାରଟିଯାକ ରାଶିର ଅନ୍ତର ଏହାର ସମାନ ହେବ । ଏହି ହିସାବରେ ଅନ୍ୟାନ୍ୟ ଭାବ ମାନଙ୍କର ଅନ୍ତର ବିଚାର କରିବେ ।

## ଆୟୁର୍ବିଚାର:-

୧, ଲଗ୍ନେଶ, ଅଷ୍ଟମେଶ, ୨, ଲଗ୍ନ, ଚନ୍ଦ୍ର, ବା ଶନି ଓ ଚନ୍ଦ୍ର ୩, ଲଗ୍ନ ଓ ହୋରା ଲଗ୍ନରୁ ଆୟୁ ବିଚାର କରାଯିବ । ଏଠାରେ ଲଗେଶ ବୃହସ୍ପତି ଲଗ୍ନ ସମରାଶି ହୋଇ ଥିବାରୁ ବିପରୀତ ଗଣନାନୁସାରେ ଅଷ୍ଟମେଶ ମଧ୍ୟ ରବି, ଏଦୁହେଁ ସ୍ଥିରରାଶିରେ ଥିବାରୁ ଅଳ୍ପାୟୁ ଯୋଗହେଲା । ଲଗ୍ନ ବା ସପ୍ତମରେ ଚନ୍ଦ୍ର ନ ଥିବାରୁ ଶନି ଓ ଚନ୍ଦ୍ରଠୁଁ ବିଚାର କଲେ ଚନ୍ଦ୍ର ଚରରାଶିରେ ଓ ଶନି ମଧ୍ୟ

ଚରରାଶିରେ ଅଛନ୍ତି, ତେଣୁ ଦ୍ୱିତୀୟ ପ୍ରକାରେ ଦୀର୍ଘାୟୁ ଯୋଗ ନହୁଅନ୍ତି । ତୃତୀୟ ପ୍ରକାରେ ସେହିପରି ଲଗ୍ନ ଦ୍ୱିସ୍ୱଭାବ ରାଶିରେ ଏବଂ ହୋରାଲଗ୍ନ ସ୍ଥିର ରାଶିରେ ହୋଇ ଥିବାରୁ ଦୀର୍ଘାୟୁ ଯୋଗ ହେଉଅଛି ଏତେବ ଦୁଇଟି ପ୍ରକାର ଦୀର୍ଘାୟୁ ଯୋଗ ହେଉ ଥିବାରୁ ଦୀର୍ଘାୟୁ ବୋଲି ସ୍ଥିର କରା ହେଲ , ତେଣୁ ଯୋଗ ଖଣ୍ଡ ୩୬ ଗ୍ରହଣ କରାଗଲା ।

ଏଠାରେ ଶନି ଚନ୍ଦ୍ର ଓ ଲଗ୍ନ ହୋରାଲଗ୍ନ ଏହି ଗ୍ରହେଷ୍ଟ ଯୋଗକର୍ତ୍ତା ହେଲେ । ସୂତ୍ରାନୁସାରେ ଏହିଗ୍ରହଟି ଯୋଗକର୍ତ୍ତା ହେଲେ ଏମାନଙ୍କ ପୃଥକ୍ ଭାବେ ଆୟୁ ସାଧନ କରି ଗ୍ରହରେ ଭାଗଦେଲେ ମଧ୍ୟ ସ୍ପଷ୍ଟ ଅନୁମାନ ହେବ । ଅଥବା ଏହି ଗ୍ରହେଷ୍ଟର ଅଂଶାଦିକୁ ମିଶାଇ ୪ ରେ ହରଣ କଲେ ସେହିପରି ଆୟୁ ସ୍ଥିର ହେବ ।

ଯଥା:—ଶନି ଚନ୍ଦ୍ର ଲଗ୍ନ ଓ ହୋରାଲଗ୍ନର ଅଂଶାଦି ଯୋଗ କରିବାରୁ ୮୨ । ୨୯ । ୩୫ । ହେଲ ଏହାକୁ ୪ ରେ ହରଣ କରିବାରୁ ଲବ୍ଧ ୨୦ । ୩୭ । ୨୩ ୪୫ । ଥାଉଲା । ଏହାକୁ ୩୬ ରେ ଗୁଣିବାରୁ ଗୁଣଫଳ ୭୪୨ । ୨୬-୧୫ । ହେଲ । ଏହାକୁ ୩୦ ରେ ହରଣ କରିବାରୁ ଲବ୍ଧି ୨୪ । ୭ । ୧୯ । ୧୫ ହେଲ । ଏହାକୁ ୧୦୮-ରୁ ଫେଡିବାରୁ ସୂତ୍ରା ନୁସାରେ ଆୟୁଷ ମାନ ହେଲା-ବା ୮୩ । ୪ । ୧୦ । ୪୫ ।

ଅପ୍ରୁଷ୍ଟିର କାଲପରେ କଷାବୃଦ୍ଧି ବା କଷା ହ୍ରାସ ହେଉଛି କି ନାହିଁ ବିଚାର କରିବେ ।

ଏହି ପରି "ପିତୃଲ୍ଲଭ ଚେ୍ଚେଶ—" ଇତ୍ୟାଦି ସୂତ୍ର ମାନଙ୍କ ଦ୍ୱାରା ଅଂଶୁ ବାହାର କାଲପରେ ଦଶାଦି ବିଚାର କରି ଆୟୁଷ ସ୍ଥିର କରିବେ ।



## ମୟ ଯବନାଦି ମତରେ ଆୟୁ ବିଚାର:—(ବୃହତ୍ଜାତକ)

"ମୟ ଯବନ ମଣି ମିତ୍ଥ ଶକ୍ତି ପୂର୍ବୈର୍ଦିବା କରାଦିଷୁ ବର୍ଷାଃ ପ୍ରଦିଷ୍ଟାଃ । ନବତିଥି ବିଷୟାଶ୍ୱି ଭୂତ ରୁଦ୍ର ଦଶ ସହିତା ଦଶଭିଃ ସ୍ୱତୁଙ୍ଗ ଭେଷୁ ।"

ଅର୍ଥାତ୍:—ମୟ, ଯବନ, ମଣି, ମିତ୍ଥ, ପରାଶରାଦି ଦୈବଜ୍ଞ ମାନଙ୍କ ମତରେ ଯଥା କ୍ରମେ ୧୯ । ୨୫ । ୧୫ । ୧୨ । ୧୫ ।- ୨୧ । ୨୦ ଗ୍ରହାୟୁ ସ୍ଥିର ହୋଇଛି । ଯଥା-ରବି ପରମୋଚ୍ଚ (୧୦ ଅଂଶରେ) ହେଲେ ରବିକୃତ ଆୟୁ ୧୯ ବର୍ଷ, ଅନ୍ୟାନ୍ୟ ଗ୍ରହ-ମାନଙ୍କର ମଧ୍ୟ ଏହିପରି ବୁଝିନେବେ ।

ପୁଣି:—

ନାତେଽତୋଽଙ୍ଘ୍ରିଂ ହ୍ରସତିହି ତତଶ୍ଚାନ୍ତର ସ୍ଥେଽନୁପାତେ ।
ହୋରା ତ୍ୱଂଶ ପ୍ରତିମମପରେ ରାଶିତୁଲ୍ୟଂ ବଦନ୍ତି ।

ହୃତ୍ୱାଙ୍କଂ ବ୍ୟୁଚ୍ଚଗଗନ୍ତି ହ୍ରୀୟତେ ସ୍ୱତ୍ରଭାଗଃ-
ସୂର୍ଯ୍ୟୋ ଚ୍ଛନ୍ନଦ୍ୟୁତଷ୍ଟୁ ଚ ଦଳଂ ପ୍ରୋଜ୍‌ଝ୍ୟ ଶୁକ୍ରାର୍କ ପୁତ୍ରୌ । ।

ଅର୍ଥାତ୍:—ପରମ ନୀଚରେ ଥିବା ଗ୍ରହ ମାନଙ୍କର ଆୟୁ ଅଧା ନଷ୍ଟ ହୋଇଯାଏ ।, ଅର୍ଥାତ୍ ଉପରୋକ୍ତ ଆୟୁ ପିଣ୍ଡରୁ ଅର୍ଦ୍ଧ ହ୍ରାସ ଘଟେ । (ଅର୍ଥାତ୍ ନୀଚସ୍ଥ ରବ୍ୟାଦି ଗ୍ରହ ମାନଙ୍କର କ୍ରମରେ ୯/୨, ୧୨/୨, ୭/୨, ୨, ୭/୨, ୧୦/୨, ୧୦ ଆୟୁ ହୋଇଥାଏ । ) ତେଣୁ ଉଚ୍ଚ ଓ ନୀଚ ମଧ୍ୟସ୍ଥ ଗ୍ରହର ଅନୁପାତ ଦ୍ୱାରା ଆୟୁ ସ୍ଥିର କରାଯାଏ ।

ଲଗ୍ନାୟୁ ସାଧନରେ:—ଲଗ୍ନଭୁକ୍ତ ନବାଂଶ ତୁଲ୍ୟ ବର୍ଷାଦି ଗ୍ରହଣ କରାଯାଏ ଏବଂ କେହି୍ ୨ ଆଚାର୍ଯ୍ୟ ଲଗ୍ନଭୁକ୍ତ ରାଶି ସମାନ ବର୍ଷ ଆଦି ଲଗ୍ନାୟୁ ରୂପେ ଗ୍ରହଣ କରିଥାନ୍ତି ।

ଅର୍ଥାତ୍:—ଯଦି ଲଗ୍ନ-ରାଶି, ବଳବାନ୍ ହୁଏ; ତେବେ ରାଶି ତୁଲ୍ୟ ବର୍ଷାଦି ଏବଂ ଯଦି ଲଗ୍ନର ନବାଂଶ ବଳୀ ହୁଏ ତେବେ ଲଗ୍ନଭୁକ୍ତ ନବାଂଶ ତୁଲ୍ୟ ବର୍ଷାଦିକୁ ଲଗ୍ନାୟୁ ରୂପେ ବୁଝିବେ । ବକ୍ର ଗତ ଗ୍ରହକୁ ଛାଡ଼ି ଶତ୍ରୁ ଗୃହସ୍ଥ ଗ୍ରହର ଗଣିତାଗତ ଆୟୁର ତୃତୀୟାଂଶ ନଷ୍ଟ ହୁଏ ।

ଶନି ଓ ଶୁକ୍ର ବିନା ରବି ନିକଟସ୍ଥ ଆନ୍ୟାନ୍ୟ ଗ୍ରହ ମାନଙ୍କର ଆୟୁର ଅଧା ନଷ୍ଟ ହୋଇଥାଏ ।

ଉ:—ଶକାବ୍ଦ ୧୮୭୪ ବୈଶାଖ ଶୁକ୍ଳ ପ୍ରତିପଦ୍ ଗୁରୁବାରେ ସୂର୍ଯ୍ୟୋଦୟ ଇଷ୍ଟ ଦ ୧ । ୫୯ ରେ କାହାର ଜନ୍ମ, ଏହି ସମୟର ଲଗ୍ନ ରା° ।୨୧ । ୨୧ । ୧୯

## ଜନ୍ମ କୁଣ୍ଡଳୀ




ଗ୍ରହସ୍ଫୁଟ

| | | | | |
|---|---|---|---|---|
| ର | ୦ | ୬ | ୪୯ | ୪୪ |
| ଚ | ୦ | ୧୨ | ୧୫ | ୫୭ |
| ମ | ୨ | ୧୩ | ୨୦ | ୨୭ |
| ବୁ | ୧୧ | ୨୪ | ୧୭ | ୨୫ |
| ବୃ | ୭ | ୧୪ | ୧୦ | ୨୭ |
| ଶୁ | ୧୧ | ୧୬ | ୨୦ | ୭ |
| ଶ | ୦ | ୨୮ | ୫ | ୫୫ |

ରବିସ୍ଫୁଟ ୦ | ୬ | ୪୯ | ୪୦ କୁ, ଏହାର ଉଚ୍ଚାଂଶରୁ ଅନ୍ତର କରିବାରୁ, ବାକି ୧୯୦ | ୨୦ ,ଏଥିରେ (ରବି) ପରମାୟୁର୍ଦାୟର

ଅଧା ବର୍ଷ, ମାହିସ ବା ୧୧୪ ମାସ ଗୁଣିବାରୁ ୨୧୬୯୮ ହେଲା । ଏହାକୁ ଚକ୍ରାର୍ଧକଳାରେ (୧୦୮୦୦) ଭାଗ ଦେବାରୁ ଲବ୍ଧି ବର୍ଷାଦି ୦ । ୨ । ୦ । ୧୬ । ୨୦ ହେଲା । ଏହାକୁ ଉଚ୍ଚଗତ ବର୍ଷ ୧୯ ରୁ ଫେଡିବାରୁ ବ ୧୮ । ୯ । ୨୯ । ୪୩ । ୪୦ ରବିର ଆୟୁ ମାନ ହେଲା । ଏହି ହିସାବରେ ଚନ୍ଦ୍ରାୟୁ ୨୩ । ୬ ୨୧ । ୪୦ ଭୌମାୟୁ ୯ । ୪ । ୧୦ । ୦ । ୦ । ବୁଧାୟୁ ୬ । ୩ । ୨୧ ।- ୩୬ । ୦ ଜୀବାୟୁ ୯ । ୭ । ୧୨ । ୩୦ । ୦ ଶୁକ୍ରାୟୁ ୨୦ । ୪- । ୧୬ । ୨୧ । ୦ ଶନୈଶ୍ଚରାୟୁ ୧୦ । ୫ । ୧୨ । ୦ । ୦ ହେଲା ।

ଲଗ୍ନାୟୁ ସାଧନ—ଏଠାରେ ଲଗ୍ନ-ରାଶି ମେଷ ଏବଂ ନବମାଂଶ ତୁଳା ଏ ଉଭୟେ ବଳହୀନ ହେବାରୁ ଲଗ୍ନ ଭୁକ୍ତନବାଂଶ ତୁଲ୍ୟ ବର୍ଷାଦି ଗ୍ରହଣ କରି ଲଗ୍ନାୟୁ ସ୍ଥିର ହେବ ।

ଯଥା :—ଲଗ୍ନ-ଭୁକ୍ତାଂଶ ୨୧ । ୨୧ । ୧୯ ଅଂଶକୁ କଳା କରି ୨୦୦କୁ ଭାଗ ଦେବାରୁ ଲବ୍ଧି ବର୍ଷ ଓ ଶେଷ ୮୧ । ୧୯ କୁ ୧୨ ରେ ଗୁଣି ସେହି ୨୦୦ ରେ ହରିବାରୁ ମା ୪ ଅବଶିଷ୍ଟକୁ ୩୦ ରେ ଗୁଣି ସେହି ହରଣରେ ହରିବାରୁ ଦିନ ୨୬ ସେହିପରି ଦ ୨୨ ।୧୨ ଏହିପରି ଲଗ୍ନାୟୁ ହେଲା ୬ । ୪ । ୨୬ । ୨୨ । ୧୨ ପୂର୍ବଶ୍ଳୋକକୁ ଏଠାରେ ଶତ୍ରୁ ଗୃହସ୍ଥ ଗ୍ରହର ତୃତୀୟାଂଶ ଓ ଅସ୍ତଗତ ଗ୍ରହର ଅଧା ଅୟୁ ହ୍ରାସ କରାଯିବ । ଏବଂ ଅଗ୍ରିମ ଶ୍ଳୋକାନୁକାରେ ମଧ୍ୟ ବ୍ୟୟଭାବରୁ ଉତ୍କ୍ରମରେ ସପ୍ତମ ଭାବ ମଧ୍ୟରେ ଥିବା ଗ୍ରହ ମାନଙ୍କ ଆୟୁର ଚକ୍ରାର୍ଦ୍ଧ ହ୍ରାସ କରାଯିବ ।

ତେଣୁ ଉକ୍ତ ଜାତକରେ ବ୍ୟୟସ୍ଥ ଶନି ଓ ବୁଧ ଶୁକ୍ର ହୋଇ ଥିବାରୁ ବଳବାନ୍ ଅଟେ ।

ଏଣୁ କେବଳ ଶୁକ୍ରାୟୁର ଚକ୍ରାର୍ଦ୍ଧ ହାନି କରିବାରୁ (ପୂର୍ବ ସାଧିତ ଶୁକ୍ରାୟୁର ଅର୍ଦ୍ଧ) ବ, ୧୦ । ୨ । ୮ । ୧୦ । ୩୦,। ଶତ୍ରୁ ଗୃହସ୍ଥ ହୋଇ ଥିବାରୁ ଏହାର ତୃତୀୟାଂଶ ୩ । ୪ । ୨୨ । ୪୩ । ୩୦ ସେଥିରୁ ଫେଡିବାରୁ (୧୦ । ୨ । ୮ । ୧୦ । ୩୦ — ୩ । ୪ । ୨୨ ୪୩ । ୩୦ =) ବ ୬ । ୯ । ୧୫ । ୨୬ । ୦ ଏହା ଶୁକ୍ରର ସ୍ପଷ୍ଟାୟୁର୍ଦ୍ଦାୟ ହେଲ ।

ସେହିପରି ବୁଧ ଶତ୍ରୁଘରେ ଥିବାରୁ ବୁଧାୟୁର ତୃତୀୟାଂଶ-୨ । ୧ । ୭ । ୧୨ କୁ ସେହି ବୁଧାୟୁରୁ ଫେଡ଼ିବାରୁ ବୁଧର ସ୍ପଷ୍ଟାୟୁ ହେଲ ବ ୪ । ୨ । ୧୪ । ୨୪ । ୦ । ବୃହସ୍ପତି ଅଷ୍ଟମରେ ଥିବାରୁ ଜୀବାୟୁର ଦଶମାଂଶ ୦ । ୧୧ । ୧୬ । ୧୫ କୁ ଜୀବାୟୁରୁ ଫେଡ଼ିବାରୁ ୮ । ୨ । ୨୬ । ୧୫ । ୦ ସ୍ପଷ୍ଟ ଜୀବାୟୁର ହେଲ ।

ଏବଂ ଚନ୍ଦ୍ର ରବିରଶ୍ମିରେ ଅସ୍ତ ହୋଇ ଥିବାରୁ ପୂର୍ବସାଧିତ ଚନ୍ଦ୍ରାୟୁର ଅର୍ଦ୍ଧ ୧୧ । ୯ । ୧୭ । ୫୦ କୁ ଚନ୍ଦ୍ରାୟୁରୂପେ ଗ୍ରହଣ କରାଗଲ । ଏହି ସମସ୍ତ ଆୟୁର ଯୋଗ ବ ୭୬ । ୫ । ୨୫ । ୧ । ୫୨ ହେଲ ।

ଅର୍ଥାତ୍ :—

| | | | | | |
|---|---|---|---|---|---|
| ସୂର୍ଯ୍ୟାୟୁ | ୧୮ | ୯ | ୨୯ | ୪୩ | ୪୦ |
| ଚନ୍ଦ୍ରାୟୁ | ୧୧ | ୯ | ୧୦ | ୫୦ | ୦ |
| ଭୌମାୟୁ | ୯ | ୪ | ୧୦ | ୦ | ୦ |

| | | | | | |
|---|---|---|---|---|---|
| ବୁଧାୟୁ | ୪ | ୨ | ୧୪ | ୨୪ | ୦ |
| ଜୀବାୟୁ | ୮ | ୭ | ୨୬ | ୧୫ | ୦ |
| ଶୁକ୍ରାୟୁ | ୬ | ୯ | ୧୫ | ୨୭ | ୦ |
| ଶନୈଶ୍ଚରାୟୁ | ୧୦ | ୫ | ୧୨ | ୦ | ୦ |
| ଲଗ୍ନାୟୁ | ୬ | ୪ | ୨୬ | ୨୨ | ୧୨ |
| ଯୋଗ=ବ ୭୬ | ୫ | ୨୫ | ୧ | ୫୨ | |

ବହୁ ଆଚାର୍ଯ୍ୟ ସମ୍ମତ ଲଗ୍ନାୟୁର୍ଦାୟ ସାଧନ ପ୍ରକାର:—

ଲଗ୍ନରାଶି ସମାଷ୍ଟାବ୍ଦା, ଦ୍ୱିଘ୍ନାଂଶାଦ୍ୟାଃ ଶରୋଦ୍ଧୃତାଃ ।
ମାସାଃ,ଶେଷାଂଶକାଦ୍ୟାସ୍ତୁ ରସଘ୍ନା ଦିବସାଦିକାଃ ।

ଅର୍ଥାତ୍—ଲଗ୍ନର ଭୁକ୍ତ ରାଶି ସଦୃଶ ବର୍ଷ ହେବ । ଏବଂ ତାର ଅଂଶାଦିକୁ ୨ ରେ ଗୁଣି ୫ ଦ୍ୱାରା ହରଣ କଲେ ଲବ୍ଧାଂ ତୁଲ୍ୟ ମାସ ଓ ଶେଷ ଅଂଶାଦିକୁ ୬ ରେ ଗୁଣିଲେ ଦିନାଦି ହେବ ।

ଚକ୍ରୋତ୍ତରାର୍ଦ୍ଧ ସ୍ଥିତ ଗ୍ରହ ମାନଙ୍କର ଆୟୁହ୍ରାସ ପ୍ରକାର:—

ସର୍ବାର୍ଦ୍ଧ ତ୍ରିଚରଣ ପଞ୍ଚଷଷ୍ଠଭାଗାଃ, କ୍ଷୀୟନ୍ତେ ବ୍ୟୟ ଭବନା-ଦସତ୍ସୁ ବାମମ୍ ।

ସତ୍ସ୍ୱର୍ଦ୍ଧଂ ହ୍ରସତି ତଥୈ କରୂରଶିଦୋନା, ଚେଦେକାଂଶଂ ହରତି ବଲୀ ତଥାହ ସତ୍ୟଃ ।

ଅର୍ଥାତ୍— ବ୍ୟୟ ଭାବଠାରୁ ବିପରୀତ ଭାବେ ସପ୍ତମ ଭାବ ପର୍ଯ୍ୟନ୍ତ ଗ୍ରହ-
ମାନେ ଥିଲେ ସେମାନଙ୍କର ଗଣିତା ଗତ ଆୟୁର ଯଥା-
କ୍ରମେ ପୂର୍ଣ୍ଣ, ଅର୍ଦ୍ଧ ତୃତୀୟାଂଶ, ଚତୁର୍ଥାଂଶ, ପଞ୍ଚମାଂଶ ଓ
ଷଷ୍ଠାଂଶ ହ୍ରାସ ହୋଇଥାଏ । ଏବଂ ଏହି ସ୍ଥାନମାନଙ୍କରେ
ଶୁଭ ଗ୍ରହଥିଲେ ପାପଗ୍ରହ ଅପେକ୍ଷା ଅର୍ଦ୍ଧଆୟୁର ହାନିହୁଏ ,
ଯଥା —ବ୍ୟୟସ୍ଥ ପାପ ଗ୍ରହର ସମ୍ପୂର୍ଣ୍ଣ ଓ ଶୁଭ ଗ୍ରହର ଅର୍ଦ୍ଧେ
ଏକାଦଶରେ ପାପଗ୍ରହର ଅର୍ଦ୍ଧ ଓ ଶୁଭ ଗ୍ରହର ଚତୁର୍ଥାଂଶ
ଦଶ ମସ୍ଥ ପାପର ତୃତୀୟାଂଶ ଏବଂ ଶୁଭ ଗ୍ରହସ୍ୟ ଷଷ୍ଠାଂଶ,
ନବମରେ ପାପର ଚତୁର୍ଥାଂଶ ଓ ଶୁଭ ଗ୍ରହର ଅଷ୍ଟମାଂଶ,
ଅଷ୍ଟମରେ ପାପ ଗ୍ରହର ପଞ୍ଚମାଂଶ, ଶୁଭ ଗ୍ରହର ଦଶମାଂଶ
ସେହିପରି ସପ୍ତମରେ ପାପ ଗ୍ରହର ଷଷ୍ଠାଂଶ ଓ ଶୁଭ ଗ୍ରହର
ଦ୍ୱାଦଶାଂଶ ଆୟୁର୍ଦାୟର ହ୍ରାସ ହୁଏ । ଯଦି ଗୋଟିଏ
ସ୍ଥାନରେ ଦୁଇ ବା ତତୋଽଧିକ ଗ୍ରହଥାନ୍ତି, ତେବେ ସେଠାରେ
ବଳବାନ୍ ଗ୍ରହରହିଁ କଥିତାଂଶ ହ୍ରାସ ହୁଏ । ସତ୍ୟାଚାର୍ଯ୍ୟ
ମଧ୍ୟ ଏହିପରି କହିଥାନ୍ତି

ଲଗ୍ନସ୍ଥ ପାପଦ୍ୱାରା ଆୟୁହାନି ବିଚାର:---

ସାର୍ଦ୍ଧୋଦିତୋଦିତନବାଂଶ ହତାତ୍ ସମସ୍ତାଦ୍ ।
ଭାଗୋଷ୍ଟ ଯୁକ୍ତ ଶତସଂଖ୍ୟମୁ ପୈତି ନାଶମ୍ ।
କ୍ରୂରେ ବିଲଗ୍ନ ସହିତେ ବିଧିନା ତ୍ୱନେନ
ସୌମ୍ୟେକ୍ଷିତେ ଦଳମତଃ ପ୍ରଳୟଂ ପ୍ରୟାତି ।

ଅର୍ଥାତ୍:—ପାପଗ୍ରହ ଲଗ୍ନସ୍ଥ ହେଲେ ଲଗ୍ନର ଅଙ୍କୋଦିତ ଚିତ-
ନବାଂଶ ସଂଖ୍ୟା ଦ୍ୱାରା ଗଣିତାଗତ ସମସ୍ତ ଆୟୁମାନଙ୍କୁ
ଗୁଣି, ୧୦୮ ରେ ହରଣ କଲେ ଲବ୍ଧ ବର୍ଷାଦ ଯାହା
ଆସିବ ସେତିକି ଆୟୁ ଗଣିତାଗତ ମୋଟ ଆୟୁରୁ କମ
ହେବ ବୋଲି ବୁଝିବ । ଯଦି ଲଗ୍ନଗତ ପାପ
ଗ୍ରହଠାରେ ଶୁଭ ଦୃଷ୍ଟି ପଡୁଥାଏ ତେବେ ଉକ୍ତ ବର୍ଷରେ
ଆଗତ ଆୟୁର ଅଧା କେବଳ ହ୍ରାସ ହେବ ।

ଯଥା:--ପୂର୍ବୋକ୍ତ ଜାତକରେ ଲଗ୍ନରେ ପାପଗ୍ରହ ଥିବାରୁ ଲଗ୍ନ-
ନବାଂଶ ସଂଖ୍ୟା ୭ ଦ୍ୱାରା ସମସ୍ତ ଆୟୁମାନ ୭୬ । ୫ ।-
୨୫ । ୧ । ୫୨ । କୁ ଗୁଣିବାରୁ ୫୩୫ । ୪ । ୨୫ ।-
୧୩ । ୪ । ଏଥିରେ ୧୦୮ ଦ୍ୱାରା ହରଣ କରିବାରୁ ଲବ୍ଧ
ବର୍ଷାଦି ୪ । ୧୧ । ୧୪ । ୪୪ । ୩ । କୁ ସମ୍ପୂର୍ଣ୍ଣ ଆୟୁ-
ମାନରୁ (୭୬ । ୫ । ୨୫ । ୧ । ୫୨—୪ ୧୧ । ୧୪-
୪୪ । ୩ =) ଫେଡ଼ିବାରୁ ଜାତକର ସ୍ପଷ୍ଟ ଆୟୁର୍ଦାୟ
୭୧ । ୬ । ୧୦ । ୧୭ । ୪୯ ହେଲା ।

ମନୁଷ୍ୟ ... ମାନଙ୍କର ପଧମ ମାନରେ ପରମାୟୁ ପ୍ରମାଣ:—

---

ସ୍ୱ... ଷଷ୍ଟି ଦ୍ୱିଘ୍ନୀ ମନୁଜ ମତ୍ତ୍ରାଂ ପଞ୍ଚ ଚ ନିଶା
... ଦ୍ୱାତ୍ରିଂଶତ୍ ଖର-କର ଭଯୋଃ ପଞ୍ଚକାଜୁତଃ ।

ବିଂଶତ୍ୟା ସାର୍ଦ୍ଧ୍ୟାଶ୍ଚ ସ୍ଫୁଟଂ ଷ ମହି ଷଡ୍ୟୋ ଦ୍ୱାଦଶ ଶୁନାଂ-
ସ୍ଫୁଟଂ ଛାଗାଦୀନାଂ ଦଶକ ସହିତାଃ ଷଟ୍ ଚ ପର୍ମମ୍ ।

ଅର୍ଥାତ୍:—ଭାରତସ୍ଥ ମନୁଷ୍ୟ ଓ ହସ୍ତୀ ମାନଙ୍କର ୧୨୦ ବର୍ଷ ଓ ପାଅଦନ, ଘୋଡ଼ା ମାନଙ୍କର ୩୨ ବର୍ଷ, ଗଧ ଓ ଓଟର ୨୫ ବର୍ଷ, ଗୋ ଓ ମହିଷର ୨୪ ବର୍ଷ, କୁକ୍କୁର ର ୧୨ ବର୍ଷ, ଛେଳି, ମେଣ୍ଢା, ହରଣାଦିଙ୍କର ୧୬ ବର୍ଷ ମନୁଷ୍ୟ ମାନଙ୍କର ଯେପରି ଅୟୁ ସାଧନ କରା ଯାଉଛି ସେହିପରି ଏମାନଙ୍କର ଅୟୁ ସାଧନ ମଧ୍ୟ କରାଯାଏ ।

ଗୌରିଜାତକୋକ୍ତ ନକ୍ଷତ୍ରାୟୁ ସାଧନ:---

---

ପରମାୟୁଃ ପ୍ରମାଣେନ ଗୁଣୟେତ୍ ଗତ ନାଡ଼ିକାଃ ।
ନକ୍ଷତ୍ରସ୍ୟ ହରେତ୍ଭାଗଂ ନାବତ୍ୟାପ୍ତଂ ବିଶୋଧୟେତ୍ ।
ପରମାୟୁର୍ଷ ପୁଂସଷ୍ଟ ବିଶେଷମାୟୁଃ ସ୍ଫୁଟଂ ଭବେତ୍ ।

ଅର୍ଥାତ୍---ପରମାୟୁ ପ୍ରମାଣ (୧୨୦) ଦ୍ୱାରା ଭୟାତ (ଋକ୍ଷଭୋଗ) କୁ ଗୁଣି, ସେହି ଗୁଣନ ଫଳକୁ ଭୋଗ ଦ୍ୱାରା ଭାଗଦେଲେ ଯେଉଁ ଲବ୍ଧି ଆସିବ, ତାକୁ ପରମାୟୁ ସଂଖ୍ୟା (୧୨୦) ରୁ ଫେଡ଼ିଲେ ଅବଶିଷ୍ଟ ସ୍ଫୁଟ ଅୟୁହେବ ।

ଯଥା:---ପ୍ରଥମ ଉଦାହରଣ ଜାତକର ଭୟାତ (ଋକ୍ଷଭୋଗ) ଦ ୭-
୪୯ ଏହାକୁ ଏକଜାତୀୟ କରିବାରୁ ଦଣ୍ଡରୂପକ ୪୬୯/
୬୦ ହେଲ ।

ଏହାକୁ ୧୨୦ ରେ ଗୁଣି ୯୦ ରେ ହରଣ କରିବାରୁ

୪୬୯ × ୧୨୦/୬୦ × ୯୦ = ୪୬୯ × ୪/୬୦ × ୩ =

୪୬୯ × ୧/୧୫ × ୩ = ୪୬୯/୪୫ ଲବ୍ଧ-ବର୍ଷାଦିମା ବ ୧୦

୫ ।୦୨ ଏହାକୁ ୧୨୦ ରୁ ଫେଡାରୁ ସ୍ଫୁଟ ବର୍ଷାଦି ନିମ୍ନବାୟୁ

୧୦୯ । ୬ । ୨୯ ଦିନ ହେଲା ।

ବଂଶୋତ୍ତରୀ ମତରେ ମାରକ ନିର୍ଣ୍ଣୟ :—

ଅଧୁନା ସଂପ୍ରବକ୍ଷ୍ୟାମି ମାରକାଖ୍ୟ ଗ୍ରହଂଦ୍ୱିଜ ।

ଅଳ୍ପ ମଧ୍ୟମ ପୂର୍ଣ୍ଣାୟୁଃ ପ୍ରମାଣମିହ ଯୋଗଜନ୍ ।

ବିଜ୍ଞାୟ ପ୍ରଥମଂ ପୁଂସାଂ ନ ତୋ ମାରକ ଚିନ୍ତନମ୍

ପୂର୍ବ ନିୟମନୁସାରେ ଆୟୁସ୍ଥିର କରି କେଉଁ ଦଶାରେ ତାହାର ମୃତ୍ୟୁ ହେବ ତାହାସ୍ଥିର କରିବାକୁ ହେବ । କାରଣ ଆୟୁଶେଷ ହୋଇ ନ ଥିଲେ ମାରକ ଗ୍ରହ ଦଶା ପଡିଲେ ସୁଦ୍ଧା ତାର ମୃତ୍ୟୁ ହୋଇ ପାରିବ ନାହିଁ ।

ମନ୍ଦଶ୍ଚେତ୍ ପାପସଂ ଯୁକ୍ତୋ ମାରକ ଗ୍ରହ ଯୋଗତଃ ।

ତିରସ୍କୃତ୍ୟ ଗ୍ରହାନ୍ ସର୍ବାନ ନିହନ୍ତା ପାପକୃଚ୍ଛଦା ।

ମାରକୈଃ ସହ ସମ୍ବନ୍ଧୀ ନିହନ୍ତା ପାପକୃଚ୍ଛନିଃ ।

ଅତକ ମେ୍ୟତରନ୍ ସର୍ବାନ୍ ଭବତ୍ୟେବ ନ ସଂଶୟଃ ।

ଶନି ଯଦି ତୃତୀୟ ଷଷ୍ଠ ବା ଏକାଦଶର ଅଧିପତି ହୁଏ ଅଥବା ତୃତୀୟ, ଷଷ୍ଠ, ଏକାଦଶ ସ୍ଥାନର ଅଧିପତି ମାନଙ୍କ ସହଯୁକ୍ତ ହୋଇ

କୌଣସି ମାରକ ଗ୍ରହସହେଁ ସମ୍ବନ୍ଧ ରଖେ ତେବେ ସେହି ଶନି ଅନ୍ୟସବୁ ମାରକ ଗ୍ରହମାନଙ୍କୁ ଅତିକ୍ରମ କରି ନିଜେ ପ୍ରବଳ ମାରକ ହୁଏ । ଏହିପରି ପାପ ଲକ୍ଷଣାକ୍ରାନ୍ତ ଶନି ଯଦି ମାରକହୁଏ ତେବେ ସେଠାରେ ଅନ୍ୟ ମାରକ୍କୁ ବିଚାର କରାଯିବ ନାହିଁ ।

ମାରକ ଗ୍ରହ ସମ୍ବନ୍ଧୀ ପାପକର୍ତ୍ତା ଶନିସ୍ତଦା ।
ଅତିକମ୍ୟ ତଗ୍ନ୍ ସର୍ବାନ୍ ନିହନ୍ତା ଭବତି ଧ୍ରୁବମ୍ ।

କାରଣ ଉକ୍ତ ଲକ୍ଷଣ ଯୁକ୍ତ ଶନି ନ ମାରି କେବେ ହେଲେ ଛାଡିବ ନାହିଁ । ତେଣୁ ଅନ୍ୟ ଶେଷ ହୋଇ ଥିଲେ ମାରକ ସମ୍ବନ୍ଧୀ ପାପୀ ଶନି ଦଶାରେ ନିଶ୍ଚୟ ମରଣ ହେବ ।

ଜାୟା କୁଟୁମ୍ବ ନେତାରୌ ଦ୍ୱାଦେହୌ ମୁଖ୍ୟ ମାରକୌ ।
ଷଷ୍ଠାଷ୍ଟମେଶୌ ହ୍ୱୌମୁଖୌ୍ୟ ପ୍ରବଳୌ ଚୈତରେ ଭବେୌ ।

ସପ୍ତମାଧିପତି ଓ ଦ୍ୱିତୀୟାଧିପତି ପ୍ରଧାନ ମାରକ କିନ୍ତୁ ସପ୍ତମାଧିପତିଠାରୁ ଦ୍ୱିତୀୟାଧିପତି ମାରକ ବିଷୟରେ ଅଧିକ ।

ସେହିପରି ଷଷ୍ଠାଧିପତି ଓ ଅଷ୍ଟମାଧି ପତି ମାରକ କିନ୍ତୁ ଷଷ୍ଠାଧିପତିଠାରୁ ଅଷ୍ଟମାଧି ପତି ପ୍ରବଳ ମାରକ । ଏଣୁ ଏହି ଗୁରଟି ଯାକ ଉତ୍ତରୋତ୍ତର ମାରକ ଅର୍ଥାତ୍ ଧନପତି ପ୍ରଥମ ମାରକ, ସପ୍ତମାଧିପ ଦ୍ୱିତୀୟ, ଅଷ୍ଟମାଧିପତି ତୃତୀୟ ଏବଂ ଷଷ୍ଠାଧିପତି ଚତୁର୍ଥ ମାରକ । କିନ୍ତୁ ପାପଗ୍ରହ ସମ୍ବନ୍ଧ ବିଶେଷ ରହିଲେ ଷଷ୍ଠ ପତି ମଧ୍ୟ ଦ୍ୱିତୀୟାଧିପତିଠାରୁ ବିଶେଷ ମାରକ ହୋଇ ଥାଏ ।

କେନ୍ଦ୍ରାଧିପତ୍ୟ ଦୋଷସ୍ତୁ ବଳବାନ୍ ଗୁରୁ ଶୁକ୍ରୟୋଃ,
ମାରକ ତ୍ୱେଽପି ଚ ତୟୋ ମାରକ ସ୍ଥାନ ସଂସ୍ଥିତି ।

କିନ୍ତୁ ବୃହସ୍ପତି ଓ ଶୁକ୍ରର କେନ୍ଦ୍ରାଧିପତି ଜନକ ଦୋଷ ପ୍ରବଳ ଥିବାରୁ, ଏଠାରେ ବିଶେଷ ଏହିକି ଯେ ବୃହସ୍ପତି, ଶୁକ୍ର କେନ୍ଦ୍ର ସ୍ୱାମୀ ହୋଇ ମାରକ ସ୍ଥାନ ଗତ ହେଲେ ଅନ୍ୟ ମାରକ ଗ୍ରହ ଅପେକ୍ଷା ପ୍ରବଳ ମାରକ ହୋଇଥାନ୍ତି ।

ତେଷାମ ସମ୍ଭବେ ବକ୍ତ୍ର ବ୍ୟୟାଧୀଶୋଽପି ମାରକଃ ।
ପାପ ସମ୍ବନ୍ଧ ମାତ୍ରେଣ ଦଶମେଶୋଽପିମାରକଃ ।
ତେଷାମସମ୍ଭବେ ବକ୍ତ୍ର ବ୍ୟୟାଧୀଶ ଦଶାସ୍ୱପି ।

ଉପରୋକ୍ତ ମାରକ ଗ୍ରହମାନଙ୍କ ମଧ୍ୟରୁ କାହାରି ଦଶା ବା ଅନ୍ତର୍ଦ୍ଦଶା ଆୟୁଶେଷ ବେଳକୁ ଯଦି ପଡ଼ି ନଥାଏ ତେବେ ବ୍ୟୟାଧିପତିର ଦଶାରେ ମଧ୍ୟ ମୃତ୍ୟୁ ହେବ । ପାପସମ୍ବନ୍ଧଥିଲେ ତୃତୀୟାଧିପତି ମାରକ ହୋଇଥାଏ । ସେହିପରି ବ୍ୟୟାଧିପତି ପାପଗ୍ରହ ସମ୍ବନ୍ଧୀ ହେଲେ ମଧ୍ୟ ମାରକ ହୁଏ ।

ଅଲାଭେ ପୁନରେତେଷାଂ ସମ୍ବନ୍ଧେନ ବ୍ୟୟେଶିତୁ ।
କ୍ୱଚିଚ୍ଛୁଭ ନାଂଚ ଦଶା ହ୍ୟଷ୍ଟମେଶ ଦଶାସୁଚ ।

ଯଦି ପୂର୍ବୋକ୍ତ ଗ୍ରହମାନଙ୍କର ଦଶା ନ ମିଳେ ତେବେ ବ୍ୟୟେଶ ଠାରେ ସମ୍ବନ୍ଧ ରଖିଥିବା ଶୁଭଗ୍ରହ ଦଶାରେ ମଧ୍ୟ ମୃତ୍ୟୁ ଲଭହୁଏ । ଏହାର ଅସମ୍ଭବ ହେଲେ ଅଷ୍ଟମେଶ ଦଶାରେ ମୃତ୍ୟୁ ହୋଇଥାଏ ।

କେବଲାନାଂ ଚ ପାପାନାଂ ଦଶାସୁ ନିଧନଂ କ୍ୱଚିତ୍ ।
କଳ୍ପନୀୟଂ ବୁଧୈର୍ନୃଣାଂ ମାରକାଣାମ ଦର୍ଶନେ ।

ଯଦି ପୂର୍ବୋକ୍ତ ମାରକୋପଯୋଗୀ କୌଣସି ଗ୍ରହ ନ ମିଳେ ତେବେ ପାପଗ୍ରହ ଦଶାରେ ମୃତ୍ୟୁ କଳ୍ପନା କରିବେ ।

ସ୍ୱାତ୍ମା କାରକ ଲଗ୍ନାଚ୍ଚ ରନ୍ଧ୍ରସ୍ୟୈବ ଦ୍ୱିଜ-ସତ୍ତମ ।
ଭ୍ରାତୃ ଷଷ୍ଠାଷ୍ଟମଂ ଚୈଷାଂ ଧନଂ ଦ୍ୟୁନାନ୍ତରେଷ୍ୱପି ।

ଆତ୍ମା କାରକ ଓ ଜନ୍ମ ଲଗ୍ନଠାରୁ ୩ୟ, ୬ଷ୍ଠ, ୮, ୧୨ଶ, ୨ୟ, ଓ ୭ ମସ୍ଥ ଗ୍ରହ ମାନଙ୍କ ମଧ୍ୟରେ ଯେଉଁ ଗ୍ରହ ବଳବାନ୍ ସେହି କେବଳ ମାରକ ହେବ ।

ଷଷ୍ଠସ୍ଥେ ପାପକାଦ୍ଧ୍ରୁଚେତ୍ ଷଷ୍ଠେଶୋ ମୁଖ୍ୟମାରକଃ ।
ମଧ୍ୟାୟୁଷି ସମାଯୋଗେ ରନ୍ଧ୍ରସ୍ୟୈବ ଦ୍ୱିଜସତ୍ତମ ।

ମଧ୍ୟମାୟୁ ଯୋଗରେ ଷଷ୍ଠସ୍ଥାନରେ ଯଦି ପାପଗ୍ରହ ମାନଙ୍କର ଯୋଗଅଦ୍ଧ ସମ୍ବନ୍ଧ ଥାଏ ତେବେ ସେହି ଷଷ୍ଠାଧିପତି ପ୍ରଧାନ ମାରକ ହେବ ।

ଷଟ୍କେଶାଶ୍ରୟ ରାଶୀଶ ଦଶାୟାଂ ନିଧନଂ ଭବେତ୍ ।
ଷଷ୍ଠାତ୍ ଷଷ୍ଠେଶ୍ୱରାଦ୍ ବାପି ତ୍ରିକୋଣେ ଯୋଽପି ମାରକଃ
ଦୀର୍ଘାୟୁଷି ସମାଯୋଗେ ରନ୍ଧ୍ରୀୟଂ ଦ୍ୱିଜୋତ୍ତମ ।

ଦୀର୍ଘାୟୁ ଯୋଗରେ ଷଷ୍ଠପତି ଯେଉଁ ରାଶିରେ ଥିବ ସେହି ରାଶିର ଅଧିପତି ଦଶାରେ ମୃତ୍ୟୁ ହୁଏ । ଅଥବା ଷଷ୍ଠ ବା ଷଷ୍ଠାଧିପତିର ନବମ ପଞ୍ଚମାଧିପତିର ଦଶାରେ ମଧ୍ୟ ମୃତ୍ୟୁ ହୋଇଥାଏ ।

ବୃଶ୍ଚିକେ ମକରେ ଜନ୍ମ ନୃଣାଂ ରନ୍ଧ୍ରସ୍ଥ ମୃତ୍ୟୁଦଃ
ମନ୍ଦାମରକ ଫଙ୍କୌତୌ ମାଧି କୋତ୍ତୁ ଇତସ୍ତୃତୌ ।

ବୃଶ୍ଚିକ ଓ ମକର ଲଗ୍ନଜାତ ବ୍ୟକ୍ତିର ରନ୍ଧ୍ର ମାରକ । ପୁଣି ସେହି ଲୋକର ଶୂଳକାଧିପ ଓ କେନ୍ଦ୍ରସ୍ଥ ମନ୍ଦ ମାରକ ରୂପେ ପରିଗଣିତ ।

ମାରକୋ ବହବୋ ଯେଷାଂ ଯଦା ବୀର୍ଯ୍ୟ ସମନ୍ୱିତାଃ ।
ତତ୍ତଦ୍ଦଶାନ୍ତରେ ବହୁ ରୋଗ କଷ୍ଟାଦି ସମ୍ଭବଃ ।

ବହୁତ ମାରକଗ୍ରହ ବଳବାନ୍ ହୋଇ ଥିଲେ ସେମାନଙ୍କ ଦଶାନ୍ତର ଭୋଗସମୟରେ ରୋଗ ପ୍ରଭୃତି କଷ୍ଟ ଲଭନ୍ତେ ।

ପ୍ରବଳସ୍ୟ ଦଶାୟାଞ୍ଚ ମୂର୍ଚ୍ଛା ରୋଗାର୍ତ୍ତି ମୃତ୍ୟୁବତ୍ ।
ଭୟଶୋକ ମୃତାଦ୍ ଭୀତ ତସ୍କରାଗ୍ନିଂ ଭୟଂ ଭବେତ୍ ।

ବହୁଗ୍ରହ ବଳବାନ୍ ହୋଇ ମାରକ ଦୋଷଯୁକ୍ତ ହେଲେ ସେମାନଙ୍କ ମଧ୍ୟରେ ଯେ ବିଶେଷ ମାରକ ବଳଯୁକ୍ତ ତାର ଦଶାନ୍ତର୍ଦଶା ଭୋଗ କାଳରେ ବହୁରୋଗାକ୍ରାନ୍ତ ମୃତ୍ୟୁ ସମାନ ପୀଡ଼ା, ଭୟ, ଶୋକ, ମୃତ୍ୟୁଭୟ, ଚୋରଭୟ ଓ ଅଗ୍ନିଭୟ ପ୍ରଭୃତି ହୁଏ ।

## ଆୟୁରକ୍ଷା ଉପାୟଃ—

ପଥ୍ୟାଶୀନାଂ ଶୀଲ ବତାଂ ନରାଣାଂ
ସଦ୍ ବୃତ୍ତ ଭାଜାଂ ବିଜିତେନ୍ଦ୍ରିୟାଣାଂ ।
ଏବଂ ବିଧାନାମିହ ମାୟୁରତ୍ର-
ଚିନ୍ତ୍ୟଂ ସଦା ବୃଦ୍ଧ ମୁନି ପ୍ରବାଦଃ ।

ଅର୍ଥାତ୍:—ଯେଉଁ ପର୍ଯ୍ୟାତ୍ମା, (ବନ୍ଧୁଙ୍କ ଭୋଜନାଧିନ କରେ) ସତ୍ ସ୍ୱଭାବ ଯୁକ୍ତ, ସଦ୍‌ବୃତ୍ତି ଦ୍ୱାରା ଜୀବିକା ନିର୍ବାହ କାରୀ ଏବଂ ଜିତେନ୍ଦ୍ରିୟ, ସେହି ଦ୍ୱିଜମାନଙ୍କର ଶାସ୍ତ୍ରୋକ୍ତ ଆୟୁ କଦାପି ହ୍ରାସ ହୋଇନାହିଁ ।

ଯେଯାତ ଲିଂଦଧା ଶ୍ଳୋଗଣ୍ଟ ଦେବ ବ୍ରାହ୍ମଣ ନିନ୍ଦକାଃ ।
ପରଦାର ରତାଯେ ଚ ତେଷାମାୟୂ ରକାଲଜଂ ।
ବର୍ତ୍ତ୍ୟାଧାର ସ୍ନେହ ଯୋଗାଦ୍ ଯଥାଦୀପସ୍ୟ ସଂସ୍ଥିତଃ ।
ବିକ୍ରୀୟାପି ଚ ଦୃଷ୍ଟେ ଚ ହ୍ୟକାଲେ ପ୍ରାଣ ସଂଶୟଃ ।

କିନ୍ତୁ ତୈଳ ଓ ବର୍ତ୍ତୀ ଉଭୟ ବିଦ୍ୟମାନରେ ମଧ୍ୟ ପ୍ରଚଣ୍ଡ ପବନ ବେଗରେ ଦୀପ ନିର୍ବାପିତ ହୁଏ, ସେହିପରି ଆୟୁ ଥିଲେ ମଧ୍ୟ ଯୁଦ୍ଧରେ ପ୍ରବେଶ, ଦୁର୍ଗମ ଜଳ ପଥରେ ଗମନ, ତଥା ବ୍ୟଭିଚାର ଓ ଅନାଚାରାଦି ଦୋଷରୁ ଏବଂ ଗୁରୁ, ଦେବ, ଦ୍ୱିଜାଦିଙ୍କର ଅଭିଶାପରୁ ଅକାଳରେ ମୃତ୍ୟୁ ହୋଇଥାଏ ।




ବ୍ରହ୍ମପୁର ସ୍ୱରାଜ୍ୟ ପ୍ରେସରେ ଶ୍ରୀ କାମାକ୍ଷୀପ୍ରସାଦ ଶର୍ମାଙ୍କ-
ଦ୍ୱାରା ମୁଦ୍ରିତ